# କ୍ୟାପସେଲ୍ କନ୍ୟା

(ବ୍ୟଙ୍ଗାତ୍ମକ ରଚନା ସଂକଳନ)



ନନ୍ଦକିଶୋର ସିଂହ

# କ୍ୟାସେଟ୍ କନ୍ୟା

ବ୍ୟଙ୍ଗାତ୍ମକ ରଚନା ସଂକଳନ

**ରଚୟିତା**

ନନ୍ଦକିଶୋର ସିଂହ


**ପ୍ରକାଶିକା**

ସୁରବାଳା ସିଂହ

କୋରେଇ, ଯାଜପୁର

**ଡି.ଟି.ପି/ଡିଜାଇନ୍ /ମୁଦ୍ରଣ**

**ଅକ୍ଷର ଗ୍ରାଫିକ୍ସ**

କଲେଜ ରୋଡ୍, ଯାଜପୁର ରୋଡ୍

**ପ୍ରକାଶ କାଳ :**

ଅଗଷ୍ଟ - ୨୦୦୬

ମୂଲ୍ୟ- **ଟ. ୪୦ ଙ୍କା**


**CASSETTE KANYA**

*( Satire Collection)*

**Writer**

Nanda Kishore Singh


**Publisher**

Surabala Singh

Korai, Jajpur

**DTP/Printinng**

Akshyar Graphics

College Road, Jajpur Road

Tel. (06726) 309859

**Year of Publication**

August -2006

Price **Rs. 40/-**

# ସଂକଳନ ବିଷୟରେ ପଦେ.....

ଏଥିରେ ସନ୍ନିବିଷ୍ଟ ଲେଖା ଗୁଡ଼ିକ ବିଭିନ୍ନ ସମୟରେ ପ୍ରଜାତନ୍ତ୍ର, କାଳାନ୍ତର, ଦୈନିକ ଆଜିକାଲି, ଧ୍ୱନି ପ୍ରତିଧ୍ୱନି, ଖୋଲାଦ୍ୱାର ଆଦିସମ୍ବାଦପତ୍ରରେ ଲଘୁରଚନା ଭାବେ ପ୍ରକାଶିତ ହୋଇ ସାରିଛି ।

ବିକ୍ଷିପ୍ତଭାବେ ପ୍ରକାଶିତ ରଚନା ଗୁଡ଼ିକୁ
ଏକତ୍ର କରି ପାଠକ ପାଠିକାମାନଙ୍କୁ
ପରଶିଦେବାର ଅଭିପ୍ରାୟ
ନେଇ ଏଇ ପୁସ୍ତକଟି
ପ୍ରକାଶିତ ।

ଏସବୁ ପାଠ
କରି ପାଠକ ପାଠିକା
ସମାଜର ବିଚିତ୍ର ଚରିତ୍ର ଓ ଘଟଣା
ସହ ପରିଚିତ ହେବାର ଆଶା ରଖୁଛି ।

ଏହାଦ୍ୱାରା ସମାଜର କିଛି ପରିବର୍ତ୍ତନ ହେବାର ଆଶା
ରଖିବା ମୋର ଧୃଷ୍ଟତା । ତଥାପି ଚେଷ୍ଟା କରିବାନି କାହିଁକି ?

**-ନନ୍ଦକିଶୋର -**

●

# ଏଥିରେ ସ୍ଥାନ ପାଇଛି .......


| ବିଷୟ : | ପୃଷ୍ଠା |
|---|---|
| ଆମେ ପ୍ରେମରେ କରିଛୁ ଏମ୍.ଏ. | ୧ |
| ଅମୃତ ବି ବିଷ | ୨ |
| ପ୍ରେମିକା ସହ ଏକ ସାକ୍ଷାତକାର | ୩ |
| ବୋଉଲୋ ମୁଁ ମଡେଲ ହେବି | ୫ |
| ଉପୁରି ଭିତିରି | ୬ |
| ପ୍ରେମ ପୁରାଣ | ୭ |
| ପ୍ରେମକୁ ନେଇ କିଛି କଥା | ୮ |
| ରାଣୀ ମହୁମାଛି | ୯ |
| ମୁଁ : ମୋ ସ୍ତ୍ରୀ | ୧୦ |
| ଶ୍ରୀମତୀ କମ୍ ନୁହନ୍ତି | ୧୧ |
| ଦେହି ମାଂ ବିଳାସ ବ୍ୟସନଂ | ୧୨ |
| ଆଧୁନିକ ଗୀତାର ସଂପଦଯୋଗ | ୧୩ |
| ଜଣେ ପୟୋମୁଖଂ ବିଷକୁମ୍ଭଂ ବନ୍ଧୁଙ୍କ ସଂପର୍କରେ | ୧୫ |
| ବାଛିକା–ବାଳିକା–ବାଳିକା | ୧୭ |
| କାଞ୍ଜି : ଝାଞ୍ଜି : ପାଞ୍ଜି | ୧୮ |
| ମୁଁ ସଭାପତି ହେବି | ୧୯ |
| ଆଜ୍ଞା ! କୋଉଠି ଥୋଇବି | ୨୦ |
| ଆତ୍ମଜୀବନୀ ଲେଖା ବିପକ୍ଷରେ | ୨୧ |
| ଗାଳି | ୨୩ |
| କ୍ରାଇମ୍ ଫାଇଲ୍ | ୨୪ |
| ପୁରୁଣା ଗୀତ | ୨୫ |
| ନିର୍ବାଚନ ଚଟଣି | ୨୬ |
| କ୍ୟାସେଟ୍ କନ୍ୟା ବୃତ୍ତାନ୍ତ | ୨୮ |
| ଆଧୁନିକ ଭଜନ | ୨୯ |
| ମେଧା ଯଜ୍ଞ | ୩୧ |
| ଚୋରା ପ୍ରୀତି ଓ ଗୁପ୍ତ ଭୋଟ | ୩୨ |
| ଗେରସ୍ତ ପଛେ ମରୁ : ଧଉଡୁଣୀ..... | ୩୩ |
| ତୁତ ମୁତୁରି ମୁଁ ତ ମୁତୁରି | ୩୪ |
| ନୂଆ ଅଲମ୍ପିକ୍ | ୩୬ |
| ବାଃ ବାଃ ମଧ୍ୟାହ୍ନ ଭୋଜନ | ୩୭ |
| ସେକ୍ସ ସ୍କାଣ୍ଡାଲ | ୩୮ |
| ବିଉଟି ପାର୍ଲର ହିଂଜିଡା | ୩୯ |
| ଲକ୍ଷ୍ମୀ–ସରସ୍ୱତୀ କଳି ତୁଟିଲା | ୪୦ |
| ଇଂରେଜ ଏ ଦେଶରୁ କଣ ଯାଇଛନ୍ତି ? | ୪୧ |

| ବିଷୟ : | ପୃଷ୍ଠା |
|---|---|
| କେବଳ ତିମ୍ୟାଣୁ | ୪୨ |
| ଢାବାରେ.... ମଦ... ଆଉ | ୪୩ |
| ପାନେଲ କରିବା କମିଶନ ବସାଇବା | ୪୪ |
| ସାଇବର କେଫ୍‌ରେ ଭାଲେଣ୍ଟାଇନ୍ ତାମସା | ୪୫ |
| ବହୁମୂତ୍ର ରୋଗୀ ଓ ଡି.ଏମ୍.ୟୁ. ଟ୍ରେନ୍ | ୪୬ |
| ପୋଷାକ ଧର୍ଷଣର ଇନ୍ଧନ | ୪୭ |
| ନାରୀହିଁ ନାରୀର ଶତ୍ରୁ | ୪୮ |
| ଶ୍ୱେତ ରତ୍ନାକର କି ଜୟ ! | ୪୯ |
| ସୋନିଆ.... ସାନିଆ | ୫୦ |
| ମୁଁ ଓ ମୋ ସ୍ତ୍ରୀ | ୫୧ |
| ମୀରା ବନାମ ମୀରା | ୫୨ |
| ପରୀକ୍ଷା ଫିସ୍ ଓ ନିରୀକ୍ଷା ଫିସ୍ | ୫୩ |
| ଅମୃତ କଳସର ବ୍ୟବହାର କର | ୫୪ |
| ଓ୍ୱାରେଣ୍ଟି ଯୁଗ | ୫୫ |
| ମିଛ ମହାତ୍ମା ଉପାଖ୍ୟାନ | ୫୬ |
| ପାଞ୍ଚାଳି ମନେ ପଡନ୍ତି | ୫୭ |
| ଯା ବାପ ଚଢେ ଘୋଡା..... | ୫୯ |
| ହାଇହିଲ୍ ଯୋତା | ୬୦ |
| ନିମ୍ନଗାମୀ ଦାଦା | ୬୧ |
| ପ୍ରତିଶ୍ରୁତି | ୬୨ |
| ଓଡିଆଙ୍କ ଆଖିରେ ଆଲୁଅ | ୬୩ |
| ଦେହ ବ୍ୟବସାୟ କେନ୍ଦ୍ର | ୬୪ |
| ସାହିତ୍ୟ ସଭାର ପ୍ରକାର ଭେଦ | ୬୫ |
| ମନ୍ତ୍ରୀଙ୍କ ନାଆଁ ଥିଲେ..... | ୬୬ |
| ଭାଲେଣ୍ଟାଇନ୍ ଡେ ବନାମ ସାବିତ୍ରୀ ବ୍ରତ | ୬୭ |
| ଗୋଦରା କୋଡେ ଯେଡେ..... | ୬୮ |
| ପୁରସ୍କାରର ପ୍ରକାର ଭେଦ | ୬୯ |
| ବିରୋଧାଭାସ | ୭୦ |
| ପତ୍ନୀ ଓ ପତ୍ନୀଙ୍କ କନିଷ୍ଠା ଭଗ୍ନୀ | ୭୧ |
| କୀର୍ତ୍ତନ : ଫିର୍ତ୍ତନ | ୭୨ |
| ମଣିଷ ଆଜି ପଶୁଠୁ ହୀନ | ୭୩ |
| ବିଚିତ୍ର ସମ୍ବାଦ ବନାମ ରୋଚକ ସମ୍ବାଦ | ୭୪ |
| ପାପ – ପୂଣ୍ୟ | ୭୫ |

# ଆମେ ପ୍ରେମରେ କରିଛୁ ଏମ୍.ଏ

ନିକଟରେ ଆମେ ଏକ ଟି.ଭି. ଚାନେଲ୍‌ରୁ ଗୋଟେ ଗୀତ ଶୁଣିଲୁ, ଆମେ ପ୍ରେମରେ କରିଛୁ ଏମ୍.ଏ., ତୁମେ ପିଏଚ୍.ଡି. କରିଛ କି ? ବାଃ କି ଚମତ୍କାର ଗୀତଟିଏ । ଆଗରୁ ଶୁଣିଥିଲୁ ମୋର ଅଙ୍କରେ ଶହେ ରହୁଥିଲା, ସାହିତ୍ୟରେ ଭଲ ହେଉଥିଲା, ଯେଉଁ ଦିନୁ ତୋ ପଣତ ମୋ ଦେହରେ ବାଜିଲା ମୋର ସବୁ ପାଠ ଭୁଲ୍ ହୋଇଗଲା । ବୋଧହୁଏ ଅଙ୍କ ସାହିତ୍ୟରେ ସବୁ ଭୁଲ୍‌ଭାଲ୍ ହେବାପରେ ଏବେ ସେମାନେ ପ୍ରେମରେ ଏମ୍.ଏ. କରିସାରିଛନ୍ତି । ତେବେ ଏଇ ଗୀତଟିର ପିକ୍‌ଚରାଇଜେସନ୍ ଖୁବ୍ ଚମତ୍କାର । ଦଳେ ପୁଅ ଝିଅ ଏ ଗୀତର ତାଳେ ତାଳେ ନାଚୁଥିଲେ, ସେମାନେ ଅବଶ୍ୟ ମଡର୍ଣ୍ଣ ନାଚରେ ଡବଲ୍ ଏମ୍.ଏ., ଆଉ ବେଶ ପୋଷାକ ଡିଜାଇନିଂରେ ଡି.ଲିଟ୍ କରିଥିବେ । ଆଉ ଯେଉଁ ଗୀତିକବି ଏ ଗୀତଟି ଲେଖିଛନ୍ତି ସେ କିଛି ପୁରସ୍କାର ପାଆନ୍ତୁ ନ ପାଆନ୍ତୁ ନୋବେଲ ପୁରସ୍କାର ପାଇବା କଥା । କାରଣ ରବି ଠାକୁର ସିନା ଗୀତାଞ୍ଜଳି ପାଇଁ କେଉଁ ପୁରୁଣା ଯୁଗରେ ନୋବେଲ ପୁରସ୍କାର ପାଇଥିଲେ ହେଲେ ଏ ଯୁଗରେ ସେ ଗୀତାଞ୍ଜଳିରୁ ପୃଷ୍ଠାଏ ବି କେହି ଖୋଲି ପଢ଼ିବେ କି ନା ସନ୍ଦେହ ।

ଏଇଠି ଆଉ ଗୋଟିଏ କଥା ମନକୁ ଆସୁଛି – ଆମ ବିଶ୍ୱବିଦ୍ୟାଳୟରେ ଖୁବ୍ ଶୀଘ୍ର ରତି ଶାସ୍ତ୍ରରେ ଫାକଲଟି ଖୋଲନ୍ତୁ । ଆଉ ବିଶ୍ୱବିଦ୍ୟାଳୟ ସ୍ତରରେ ଏଇସବୁ ଚର୍ଚ୍ଚା ଆଉ ବିତର୍କ ଚାଲିଲେ ବାତ୍ସାୟନ ମଧ୍ୟ ସ୍ୱର୍ଗରୁ ରାଜଧାନୀ ଏକାମ୍ର ନଗରକୁ ନିଶ୍ଚୟ ବୁଲି ଆସିବେ ।

ଆଉ, ହଁ ଯେଉଁ ଗୀତିକବିମାନେ ଏଇ ଧରଣର ଗୀତ ଲେଖି ପାରୁଛନ୍ତି ସେଇମାନଙ୍କୁ ବିଶ୍ୱବିଦ୍ୟାଳୟର କୁଳପତି ମହାଶୟ ବିନା ସାକ୍ଷାତକାରରେ ନିଯୁକ୍ତି ଦିଅନ୍ତୁ । ପୁନଶ୍ଚ ଯେଉଁ କ୍ୟାସେଟ୍ କମ୍ପାନୀମାନେ ଏଇଭଳି ଗୀତକୁ ଆଲବମ୍ କରାଇ ଯୁବଗୋଷ୍ଠୀକୁ ନଚାଇ ପାରୁଛନ୍ତି ତଥା ଦର୍ଶକଗଣଙ୍କୁ ଉତ୍ତେଜିତ କରାଇ ପାରୁଛନ୍ତି, ସେମାନେ ପ୍ରେମର ପୋଷ୍ଟଗ୍ରାଜୁଏଟ୍ କୋର୍ସ ପାଇଁ ମୋଟା ଅଙ୍କର ବୃତ୍ତି ପ୍ରଦାନର ବ୍ୟବସ୍ଥା କରନ୍ତୁ ।

ଏହିଭଳି ବ୍ୟବସ୍ଥା ହୋଇପାରିଲେ ଆମ ସଂଗୀତ ଶାସ୍ତ୍ରର ମର୍ଯ୍ୟାଦା ଖୁବ୍ ବଢ଼ିବ ଅବିଳମ୍ବେ ଏହା ଶାସ୍ତ୍ରୀୟ ମର୍ଯ୍ୟାଦା ଲାଭ କରିବ ।

ବିଶେଷତଃ ଆମ୍ଭ ଓଡ଼ିଶୀ ନୃତ୍ୟ ଶାସ୍ତ୍ରୀୟ ମର୍ଯ୍ୟାଦା ପାଇ ସାରିଥିବା ବେଳେ ଓଡ଼ିଶୀ ସଂଗୀତ ମର୍ଯ୍ୟାଦା ପାଇପାରିନି । ବିଚାରକ ମଣ୍ଡଳୀ ଯେତେବେଳେ ଏହିଭଳି କେତୋଟି ଗୀତ ଆଉ ଆଲବମ୍‌ରେ ତାର ଶାସ୍ତ୍ରୀୟ ଢଙ୍ଗର ନୃତ୍ୟ ପରିବେଷଣ ଦେଖିବେ । ସେମାନେ

ଆନନ୍ଦରେ ଉଦ୍‌ଫୁଲ୍ଲ ହୋଇ ତୁରନ୍ତ ଆମ ଓଡ଼ିଶାକୁ ଶାସ୍ତ୍ରୀୟ ମର୍ଯ୍ୟାଦା ଦେଇଦେବେ । କାରଣ ଅନେକ ଗୀତରେ ଆମେ ରାଧାକୃଷ୍ଣଙ୍କୁ ନଚାଇବାରେ ଦକ୍ଷତା ହାସଲ କରୁଛୁ । ବେଳେବେଳେ ମହାନଦୀ ପଠାକୁ ଯମୁନା ନଦୀର ଭ୍ରମ ସୃଷ୍ଟି କରିଛୁ । କଳା ଜର୍ସି ଗାଈଙ୍କୁ ହୁରୁଡାଇ ବଉଳା ଗାଈର ମର୍ଯ୍ୟାଦା ଦେଉଛୁ । ଏ ସବୁ ଆମର କରିସ୍ମା ନିଶ୍ଚୟ ।

କଥା କଣକି ଆଜ୍ଞା – ଆମେ ଓଡ଼ିଆ ଶ୍ରୋତା ଆଉ ଦର୍ଶକ ଏମାନଙ୍କୁ ବିଶେଷ ବିଶେଷ ତାଳିମାଡ଼ ଦେଇ ଯେତେ ଦିନଯାଏ ଉତ୍ସାହ ପ୍ରଦାନ କରୁଥିବା ଏଇମିତି ନୂଆ ନୂଆ ଆଇଡିଆରେ ଗୀତମାନ ସୃଷ୍ଟି ହୋଇ ଚାଲୁଥିବ ।

■

# ଅମୃତ ବି ବିଷ

ଆମେ ଜାଣନ୍ତି ଅମୃତ ବଡ଼ ମହଙ୍ଗା । ବିଷ ହୁଏତ ମହଙ୍ଗା ହୋଇପାରେ କିନ୍ତୁ ସୁବିଧାରେ ମିଳେ । ଦେଖୁ ନାହାନ୍ତି କେତେ କଷ୍ଟ କରି ସମୁଦ୍ର ମନ୍ଥନରୁ ଅମୃତ ମିଳିଥିଲା । ଅଥଚ କେଡ଼େ ସହଜରେ ବାସୁକୀର ମୁହଁରୁ ବିଷଗୁଡ଼ା ବାହାରି ପଡ଼ିଲା ।

ଏବେ ଦେଖନ୍ତୁ ଗାଈ କ୍ଷୀର କଥା । ଗାଈ କ୍ଷୀରକୁ ଆମେ ଅମୃତ ଭଳି ବିଚାର କରୁ । ଆମକୁ କ୍ଷୀର ଦାନ କରି ଜୀବନ ବଞ୍ଚାଇଥାଏ ବୋଲି ଆମେ ତାକୁ ଗୋମାତା ବୋଲି ପୂଜା କରୁ । ଏଥିରେ ସବୁ ପ୍ରକାର ଖାଦ୍ୟ ସାଙ୍ଗକୁ ଭିଟାମିନ୍ ଭରପୂର ଥାଏ ବୋଲି ଆମେ ଏହାକୁ ଅମୃତ କହିଲେ ଭୁଲ୍ ହେବନି । ଏଇ ଗାଈ ପାଇଁ ବଶିଷ୍ଠ ଆଉ ବିଶ୍ୱାମିତ୍ରଙ୍କ ଭିତରେ ତୁମୁଳ ଯୁଦ୍ଧ ଲାଗିବା କଥା ଜାଣନ୍ତି । ନନ୍ଦିନୀ ବଶିଷ୍ଠ ଆଶ୍ରମକୁ ରକ୍ଷା କରିବା ପାଇଁ ବିଶ୍ୱାମିତ୍ରଙ୍କ ସୈନ୍ୟବଳ ବିରୁଦ୍ଧରେ ଯୁଦ୍ଧ କରିବାର ଶହ ଶହ ସୈନ୍ୟ ଜନ୍ମ କରିଥିଲା । ଏଣୁ ଗାଈକୁ ଶକ୍ତିର ପ୍ରତୀକ ବୋଲି ଧରାଯାଏ । ହେଲେ ଆଜି ସେଇ ଗାଈ ନିଜ ସନ୍ତାନ ପାଇଁ କ୍ଷୀର ଟୋପେ ନିଜ ପହ୍ନାରେ ରଖିବାର ସାମର୍ଥ୍ୟ ହରାଇ ବସିଛି । ତା କ୍ଷୀରରୁ ଟୋପାଏ ବି ସେ ନିଜ ବାଛୁରୀ ପାଇଁ ସାଇତି ରଖି ପାରୁନି । କାରଣ କଣ ଜାଣିଛନ୍ତି ?

ଏବେ ପହ୍ନାରେ ଅକ୍ସିଟୋସିନ୍ ନାମକ ଇଂଜେକ୍‌ସନଟିଏ ଦେଇଦେଲେ ଗାଈ ବାଧ୍ୟ ହୋଇ ନିର୍ବିକାର ଭାବେ ଛିଡ଼ା ହେଉଛି ଆଉ ମାଲିକ ଶେଷ ବିନ୍ଦୁଯାଏ କ୍ଷୀର ଦୁହିଁ ଆଣୁଛି । ହେଲେ ଏଇ କ୍ଷୀରକୁ ପିଲାଙ୍କୁ ଖୋଇଲେ ଯେତିକି ବିପଦ ବଡ଼ ମଣିଷଙ୍କ ପାଇଁ ଆହୁରି ବିପଦ । ପିଲାଏ ଦୃଷ୍ଟି ଶକ୍ତି ହରାଉଛନ୍ତି ପୁରୁଷ ନଂପୁସକ ପାଲଟୁଛନ୍ତି ଏଣେ ସ୍ତ୍ରୀଲୋକଙ୍କୁ ସ୍ତନ କର୍କଟ

ହେବାର ସମ୍ଭାବନା !

ଏବେ ଜାଣିଲେ ତ ଅମୃତ କିମିତି ଆମରି ଦ୍ୱାରା ବିଷ ପାଲଟିଯାଉଛି । ତେବେ ଏ ବିଷଟାକୁ ଖାଣ୍ଟି ଜହରିଲା ବିଷ ନ କହି ଅମୃତିଆ ବିଷ କହିବା ଉଚିତ ହେବ !

ଦେଖୁ ନାହାନ୍ତି ଆମ ନେତାଏ ଭୋଟ୍ ପୂର୍ବରୁ କେତେ ମିଠା ମିଠା ପ୍ରତିଶ୍ରୁତି ଦେଇ ମହୁ-ମହୁଆ ଭାଷଣ ଝାଡ଼ନ୍ତି । ଅଥଚ ନିର୍ବାଚନ ଜିତିଗଲେ ତାଙ୍କ ମୁହଁରୁ ଯେଉଁ କଥାଗୁଡ଼ା ବାହାରେ ସେଥିରେ ଛଳନାର ବିଷ ଗୋଳା ଅମୃତିଆ ବାସ୍ନା ବେଶି ଥାଏ ।

ଏ କ୍ଷେତ୍ରରେ ଆମକୁ ଗୋଟିଏ ବାଟ ଦେଖାଯାଉଛି । ଆଗେ କ୍ଷୀରରେ ପାଣି ମିଶା ହେଉଥିଲା, ଏବେ ପାଣିରେ କ୍ଷୀର ମିଶାଯାଉଛି । ଫଳରେ ପାଣିଚିଆ କ୍ଷୀର ଅଭ୍ୟାସ ଛାଡ଼ି ଏବେ ଆମ ଅକ୍ସିଟେନିସିଆ କ୍ଷୀର ପିଇବାକୁ ଅଭ୍ୟାସ କରିବା । ନଚେତ୍ ସାଧନା ବଳରେ ଶିବଙ୍କ ପରି ସବୁ ବିଷ ପାନକରି ନୀଳକଣ୍ଠ ବନିଯିବା । ତା ପରେ ତ ଚାଲିବ ତାଥେଇ ତାଥେଇ ତାଣ୍ଡବ ନାଚ !!

●

# ପ୍ରେମିକା ସହ ଏକ ସାକ୍ଷାତ୍କାର

ଆଜ୍ଞା ଶିରୋନାମା ଦେଖି ଆପଣ ଭାବୁଥିବେ ମୋ ପ୍ରେମିକା ସହ ଏଇ ସାକ୍ଷାତକାରଟି ମୁଁ ନେଇଚି । ନାଇଁ ଆଜ୍ଞା ଖବର କାଗଜରେ ଏଇ ସାକ୍ଷାତକାରଟିକୁ ମୁଁ ପଢ଼ିବାରେ ସୁଯୋଗ ପାଇଥିଲି । ଏବେ ସେ ଆଉ ମୋ ପ୍ରେମିକା ନୁହନ୍ତି । ସେ ଏବେ ଜଣେ ବିଶିଷ୍ଟ ଶିଳ୍ପପତିଙ୍କ ପତ୍ନୀ, ଜଣେ ଦକ୍ଷ ଇଂଜିନିୟରଙ୍କ ଜନନୀ ତଥା ନିଜେ ମଧ୍ୟ ଜଣେ ବଡ଼ ଗାଳ୍ପିକା ଆଉ ଔପନ୍ୟାସିକା ପ୍ରାଦେଶିକ ବା ଜାତୀୟ ସ୍ତର ନୁହେଁ ଆନ୍ତର୍ଜାତୀୟ ସ୍ତରରେ ସେ ଜଣେ ସଫଳ ଲେଖିକା ।

ଏଇ ଲେଖିକା ଦିନେ ମୋ ପ୍ରେମିକା ଥିଲେ । ଏକଥା ଭାବିଲା ବେଳକୁ ମୋ ଛାତି ଆଜି ବି କୁଣ୍ଢେ ମୋଟ ହୋଇଯାଏ । ସିଏ ମୋର ସେଇମିତି ପ୍ରେମିକା ହୋଇ ରହିଗଲେ । ବଧୂ ହୋଇ ପାରିଲେନି । ଅବଶ୍ୟ ଆମ ବିବାହ ପ୍ରସ୍ତାବଟି ଭାଙ୍ଗିଯିବାରେ ଆମ୍ଭେ ଉଭୟ ଉପକୃତ ହୋଇଛୁ । ସେ ମୋ ଉପରେ ଅଭିମାନ କରି ଉପନ୍ୟାସ ପରେ ଉପନ୍ୟାସ ଲେଖି ଚାଲିଲେ । ଆଉ ମଧ୍ୟ ଗଳ୍ପ, ଉପନ୍ୟାସ, ନାଟକ, ଗୀତ ସାଙ୍ଗକୁ ରମ୍ୟରଚନା ଲେଖି ଚାଲିଲେ । ତେବେ ସେ ଜଣେ ସୁଶ୍ରୀ ମହିଳା ହୋଇଥିବାରୁ ମିଡ଼ିଆ ମାନେ ତାଙ୍କୁ ବେଶୀ ଲିଫ୍ଟ ଦେଲେ ।

ତାଙ୍କର ପବ୍ଲିସିଟି ମଧ୍ୟ ବଢ଼ି ଚାଲିଲା । ଏପରିକି ତାଙ୍କ ସ୍ୱାମୀ ଜଣେ ବିରାଟ ଶିଳ୍ପପତି ହୋଇଥିବାରୁ ସେ ମଧ୍ୟ ଖୁବ୍ ବଡ଼ ପୁରସ୍କାର (ଶିଳ୍ପପତିଙ୍କ ଦ୍ୱାରା ପ୍ରତିଷ୍ଠିତ) ପାଇ ପାରିଲେ ।

ବେଳେ ବେଳେ ମୋର ଈର୍ଷା ହୁଏତ୍ ଠିକ୍ ଅଭିମାନ ଫିଲ୍ମର ଜୟା ବଚନ ଆଉ ଅମିତାଭ ବଚନଙ୍କ ଯୁଗଳ ବନ୍ଦୀ ଭଳି ।

ସେ ଯାହା ହେଉ ଏବେ ସେଇ ପ୍ରେମିକାକୁ ଜଣେ ମିଡ଼ିଆ ମ୍ୟାନ ଗୋଟିଏ ପ୍ରଶ୍ନ ପଚାରିଥିଲେ–

ପ୍ରଶ୍ନ :– ଆପଣ ପ୍ରେମ କହିଲେ କଣ ବୁଝନ୍ତି ?

ଉତ୍ତର– ପ୍ରେମିକାର ପ୍ରେମ ଏକ ନୈସର୍ଗିକ ବସ୍ତୁ । ଏହାକୁ ଅନୁଭବ କରି ହୁଏ । ପ୍ରକାଶ କରି ହୁଏନା । କୀଟ ପତଙ୍ଗ ଠାରୁ ଦେବ କିନ୍ନର ଯାଏ ସମସ୍ତେ ଏଇ ପ୍ରେମର ଆବଦ୍ଧ ।

ମିଡିଆ ମ୍ୟାନର ପରବର୍ତ୍ତୀ ପ୍ରଶ୍ନଥିଲା –

ପ୍ରଶ୍ନ – ସେକ୍ସ ଗଭର୍ଣ୍ଣସ ଦି ଓ୍ୱାର୍ଲଡ ଏ କଥା କଣ ସତ !

ପ୍ରେମିକାର ଉତ୍ତର :– (ଟିକେ ସଙ୍କୋଚ ନକରି) ଦେଖନ୍ତୁ ଯାହା ସମସ୍ତେ ଅଳ୍ପ ବହୁତେ ଅଙ୍ଗେ ନିଭାଇଛନ୍ତି । ସେଭଳି ପ୍ରଶ୍ନର ଉତ୍ତର ପ୍ରଦାନରେ ମୋଠୁଁ ଆପଣ କି ବ୍ୟତିକ୍ରମ ଆଶା କରନ୍ତି ?

ମିଡ଼ିଆ ମ୍ୟାନ୍ ଦେଖନ୍ତୁ – ସିଧା ସଳଖ ଭାବେ କୁହନ୍ତୁ – ଆପଣ କଣ କେବଳ ପତ୍ନୀ ? ପ୍ରେମିକା ନୁହନ୍ତି !

ପ୍ରେମିକା – ହଁ, ମୁଁ ବଧୁ ଆଉ ପ୍ରେମିକା । ମିଡ଼ିଆ ମ୍ୟାନ୍ – ଆପଣଙ୍କ ଶ୍ରେଷ୍ଠ ପ୍ରେମିକ କିଏ ?

ପ୍ରେମିକା – ମୋ ସ୍ୱାମୀହିଁ ମୋ ଶ୍ରେଷ୍ଠ ପ୍ରେମିକ !

ଆଜ୍ଞା ସାକ୍ଷାତକାରରେ ଏଇ ଉତ୍ତରଟି ପଢ଼ିବା ମାତ୍ରେ ଛାତି ଭିତରେ ନିଆଁ ଲାଗିଗଲା । ଏତେବଡ଼ ଲେଖିକା ହୋଇ ଏତେ ପରିଣତ ଅବସ୍ଥାରେ କେତେ ସୁନ୍ଦର ସଫେଦ୍ ଝୁଟ୍ କରିପାରିଲେ । ମୋ ଛାତି ଉପରେ ମଥାରଖି ଇଏ କହିଥିଲେ ନା– ତୁମେଇ ମୋର ଜୀବନ, ତୁମେଇ ମୋର ପ୍ରାଣ, ତୁମେଇ ଇହପର କାଳର ଦେବତା ।

ଆଉ ଆଜି ପ୍ରେମିକା ଜଣକ କଣ ନକହିଲେ...... ! ନାରୀ କଣ ସତରେ ଛଳନାମୟୀ ! ନା କେବଳ ପ୍ରେମିକା ମାନେ ଛଳନାମୟୀ !!!

●

# ବୋଉଲୋ ମୁଁ ମଡ଼େଲ ହେବି

ବୋଉଲୋ ମୁଁ ମଡ଼େଲ ହେବି । ପ୍ରଥମେ ମିସ୍ ଭୁବନେଶ୍ୱର ପ୍ରତିଯୋଗିତାରେ ଭାଗ ନେବି । ଏଥିରେ ସକ୍ସେସ୍‌ଫୁଲ ହେଲେ ମିସ୍ ଓଡ଼ିଶା ପାଇଁ କଣ୍ଟେଷ୍ଟ କରିବି । ତାପରେ ତୋର ଆର୍ଶିବାଦ ଥିଲେ ମିସ୍ ଇଣ୍ଡିଆ ହେବି । ଯଦି ଭଗବାନଙ୍କ ଶୁଭଦୃଷ୍ଟି ପଡ଼େ ତାହାହେଲେ ମୁଁ ମିସ୍ ୟୁନିଭର୍ସ ବି ହୋଇପାରେ । ଆଉ ଏତକ ହୋଇଗଲେ ନା ସାରା ପୃଥିବୀର ଯଶ ଖ୍ୟାତି, ଧନ ମାନ ସବୁ ମୋ ପାଦତଳେ ଅଜାଡ଼ି ହୋଇପଡ଼ିବ ।

ତେବେ ମୋର ଏଇ ସ୍ୱପ୍ନ ସାକାର ହେବାପାଇଁ ପ୍ରଥମେ ମୋତେ କିଛି ଖର୍ଚ୍ଚ କରିବାକୁ ପଡ଼ିବ । କଥାରେ ଅଛି ଯେରା–କଷ୍ଟ କଲେ କୃଷ୍ଣ ମିଳେ । ଏଣୁ ପ୍ରଥମେ ମୋତେ ଡାଏଟିଂ କରିବାକୁ ପଡ଼ିବ । ମୋତେ ଦେଖିବାକୁ ହେବ ଯେପରି ମୋ ଅଣ୍ଟା ମୋଟା ନହୋଇ ସରୁ ହେବ । ତେବେ ଅତି ସରୁ ବି ହେବା ଠିକ୍ ନୁହେଁ । ଛାତି ବେଶ୍ ସୁଘ ସବଳ ଆଉ ମସୃଣ ରହିବ । ହାତର ଆଙ୍ଗୁଳିର ନଖଗୁଡ଼ିକ ମୋତେ ବଢ଼ାଇବାକୁ ହେବ । ଅନ୍ତତଃ ପ୍ରତି ନଖର ଦୈର୍ଘ୍ୟ ଯେପରି ଅଧଇଞ୍ଚରୁ ଏକଇଞ୍ଚ ଯାଏ ରହେ । ଓଠଟାକୁ ସଦାବେଳେ ଲିପଷ୍ଟିକ୍‌ରେ ଚିକ୍ ଚିକ୍ କରିବାକୁ ହେବ । ଆଖିପତା ବାଳକୁ କଟାକଟି କରି ଆକର୍ଷଣୀୟ ହରିଣୀ ଆଖିପରି କରିବାକୁ ହେବ । ତେବେ ଏସବୁ କରିବାପାଇଁ ତୋତେ ବଡ଼ ଚିନ୍ତା କରିବାକୁ ପଡ଼ିବନାହିଁ । ମୁଁ ଗୋଟିଏ ବିୟୁଟି ପାର୍ଲରକୁ ଗଲେ ସବୁ ଠିକ୍ ହୋଇଯିବ ।

ସତ କହୁଛି ବୋଉ ! ମୋର ଏ ସ୍ୱପ୍ନ ପିଲାଦିନରୁ ରହିଛି । ଖାଲି ଘରର ଏଇ ଆର୍ଥିକ ପରିସ୍ଥିତିକୁ ଚାହିଁ ମୁଁ କିଛି କହିପାରୁନାହିଁ କି ମରିପାରୁନାହିଁ । ଦେଖ୍ ବୋଉ ତୋର ତ ଆଗକୁ ନାହିଁ କି ପଛକୁ ନାହିଁ । ବାପାତ ଆଉ କେଇଦିନେ ଅବସର ଗ୍ରହଣ କରିବେ । ତାଙ୍କର ଗ୍ରାଚୁଇଟି ମିଳିବ । ସେଇ ଗ୍ରାଚୁଇଟି ପଇସାତକ ମୋତେ ଦେଇଦେବ । ହେଲା ଏବେ ତାକୁ ମୋ ବାହାଘରରରେ ଖର୍ଚ୍ଚ କରିଥାଆନ୍ତ । କିନ୍ତୁ ମୁଁ ତ ମିସ୍ ଭୁବନେଶ୍ୱର ହୋଇଗଲେ ମୋ ପଛରେ ଟୋକାମାନଙ୍କର ଲାଇନ୍ ଲାଗିବ । ତୁମକୁ ଯୌତୁକ ଦେବାକୁ ପଡ଼ିବ ନାହିଁ ।

ଏଣୁ ବୋଉ ତୁ ବାପାଙ୍କୁ ଟିକେ ବୁଝା । ଆଉ ତୁ ବି ମାନସିକ ଦିଗରୁ ପ୍ରସ୍ତୁତ ହୋଇଯାଆ । ଆସନ୍ତା ସେସନ୍ ଆରମ୍ଭରୁ ମୁଁ ବିଉଟିପାର୍ଲରକୁ ଯିବା ଆରମ୍ଭ କରିଦେବି । ବେଶୀ ଦୂର ଯିବାକୁ ପଡ଼ିବ ନାହିଁ ମ ! ବିରିବାଟିରୁ କଟକ କେତେ ବାଟ ଯେ ବସ୍‌ରେ ବି ଯା ଆସ କରି ମୋ ଚେହେରାଟା ବାଗେଇ ନେବି ।

ବୋଉ ଏସବୁ ଶୁଣି ଶୁଣି ଅସହ୍ୟ ହେବାରୁ କହିଲେ – ହଇଲୋ ଘୋଡ଼ାମୁହିଁ ! ମୋର ତ ଛୁଆ ପିଲା ଆଉ କେହି ନାହାନ୍ତି । ହେଲେ ତୁ ବି ମୋ ପେଟରୁ ମରିଯାଇ ଥିଲେ ଭଲ ହୋଇ ଥାଆନ୍ତା । ଭଗବାନ ଏଭଳି ବୁଦ୍ଧି ତୋତେ ଦେଲେ କାହିଁକି ?

●

# ଉପୁରି ଓ ଭିତିରି

ନିକଟ ଅତୀତରେ ଆମ ରାଜଧାନୀରେ ଏକ ବିରାଟ ଶପଥପାଠ ଉତ୍ସବ ଅନୁଷ୍ଠିତ ହୋଇଗଲା । ସମସ୍ତେ ଦୃଢ଼ସ୍ୱରରେ ଶପଥ ନେଲେ ସେମାନେ ଗୋପନୀୟତା ରକ୍ଷା କରିବେ । ରାଜ୍ୟ ତଥା ରାଜ୍ୟର ଜନସାଧାରଣଙ୍କ ମଙ୍ଗଳ ପାଇଁ ଯାହା ଆବଶ୍ୟକ ତାହା ସେମାନେ ନିଷ୍ଠାର ସହ କରିବେ ।

ପ୍ରତି ପାଞ୍ଚବର୍ଷରେ ଏପରି ଶପଥପାଠ ଉତ୍ସବ ହୁଏ । ବେଳେ ବେଳେ ପାଞ୍ଚବର୍ଷ ଆଗରୁ ବି ହୋଇଯାଏ । ଠିକ୍ ଯେମିତି ଏଇଥର ହେଲା । ତେବେ ଏଇ ଶପଥପାଠ ଉତ୍ସବ ଯେ ଏକ ନିଛକ ପ୍ରହସନ ତାହା ଶପଥଗ୍ରହଣ ଉତ୍ସବ ପରବର୍ତ୍ତୀ କାର୍ଯ୍ୟଧାରାକୁ ଲକ୍ଷ୍ୟକଲେ ସହଜରେ ବୁଝିହୁଏ ।

ସେ ବିଧାୟକ ହୁଅନ୍ତୁ କି ମନ୍ତ୍ରୀ ହୁଅନ୍ତୁ, ସଚିବ ହୁଅନ୍ତୁ କି ସାଧାରଣ କର୍ମଚାରୀଟିଏ ହୁଅନ୍ତୁ ଏମାନେ ପ୍ରତ୍ୟେକ ଆଇନ୍ କାନୁନ୍ ସଂହିତା ଭିତରେ କାମ କରି ରାଜ୍ୟରେ ଅନୁଶାସନ ରକ୍ଷା ପାଇଁ ଚିତ୍କାର କରିଥାନ୍ତି । କିନ୍ତୁ ଏମାନଙ୍କ କାର୍ଯ୍ୟଧାରାର ଏକମାତ୍ର ଲକ୍ଷ୍ୟ ହୁଏ ନିଜର ଏବଂ ନିଜ ପରିବାରର ହିତ ସାଧନ କରିବା । ଅନ୍ୟ ପକ୍ଷରେ ଏହାକୁ ଏକ ଉପୁରି ଆଉ ଭିତିରିର ସମନ୍ୱୟ ବ୍ୟବସ୍ଥା କହିଲେ ଅଧିକ ଯୁକ୍ତିଯୁକ୍ତ ହେବ ।

ନେତାଏ ଉପୁରି ପାଇଁ କିଛି ଭିତିରି କାରବାର କରନ୍ତି । କର୍ମଚାରୀ ମଧ୍ୟ ନିଜର ଉପୁରି ପାଇଁ ଭିତିରି ବ୍ୟବସ୍ଥା କରି ନିଜର ବସ୍ ନିଜ ବିଭାଗର ସଚିବ ସର୍ବୋପରି ମନ୍ତ୍ରୀଙ୍କୁ ସନ୍ତୋଷ ବିଧାନ କରାଯାଏ ।

ଏଣୁ ଏହି ଶପଥପାଠ ମହୋତ୍ସବ ବେଳେ ଗୋଟିଏ ନିଛକ ମନ୍ତ୍ରପାଠ କରାଯାଇ ଯେଉଁଥିରେ ଉପୁରି ଆଉ ଭିତିରିର ଗୁଣ ଗାନ ଓ ମହିମା ବର୍ଣ୍ଣିତ ହେବ । ଆମକୁ ଭାଟ

ଭାବେ ଏଇ ଶପଥପାଠ ଉତ୍ସବରେ ଯୋଗଦେବାକୁ ସୁଯୋଗ ମିଳିଲେ ଆମେ ଗାଇ ଉଠନ୍ତୁ –

ଆଜିକାଲି ଚାରିଆଡ଼େ ଉପୁରି ଓ ଭିତିରି — ଉପୁରି ନଥିଲେ ଆଜି ନୁହେଁ ସେ ଚାକିରି ।
ନେତାଙ୍କ ଭାଷଣପାଇଁ ଫୁଲମାଳ ଉପୁରି — ଭାଷଣରେ ପ୍ରତିଶ୍ରୁତି ପଛେ କିଛି ଭିତିରି ।
ଯେତେ ସ୍କାମ ସେତେ ଲାଭ ସେତେ ପୁଣି ଉପୁରି — ସ୍କାମର ବିଲୋପ ପାଇଁ କାମ କିଛି ଭିତିରି ।
ଆଜିକାଲି ସବୁଥିରେ କିଛିଥାଏ ଉପୁରି — ସବୁ ଉପୁରିରେ ପୁଣି କଥାଥାଏ ଭିତିରି ।

•

# ପ୍ରେମ–ପୁରାଣ

ଆମେ ଅଷ୍ଟାଦଶ ପୁରାଣ କଥା ଜାଣିଛେ । ତେବେ ଏଇ ଅଷ୍ଟାଦଶ ପୁରାଣ ଭିତରେ ପ୍ରେମ ପୁରାଣ ନାମକ କୌଣସି ପୁରାଣ ନାହିଁ । ହେଲେ ପ୍ରତି ପୁରାଣରେ କିଛିନା କିଛି ପ୍ରେମ କଥା ରହିଛି । ଏଇ ଯେମିତି ଶିଷ୍ୟ ଚନ୍ଦ୍ରଙ୍କର ଗୁରୁପତ୍ନୀଙ୍କ ମଧ୍ୟରେ ପ୍ରେମ । ସେହିପରି କଚ–ଦେବଯାନୀ କଥାଠାରୁ ଆରମ୍ଭ କରି ସୂର୍ଯ୍ୟ–ଛାୟା ମାୟା କଥା ଇତ୍ୟାଦି । ଆମେ ଏଠାରେ ସେସବୁ ପ୍ରେମ କଥା କହୁନାହୁଁ । ଅନ୍ୟ କଥାରେ କହିବାକୁ ଗଲେ ପୁରାଣରେ ପ୍ରେମକଥା ନକହି ପ୍ରେମର ପୁରାଣ କଥା କହିବା ।

ଦ୍ରୌପଦୀଙ୍କ ପଞ୍ଚସ୍ୱାମୀ ଥିଲେ ବି କର୍ଣ୍ଣର ଶୌର୍ଯ୍ୟ ବୀର୍ଯ୍ୟ ପ୍ରତି ତାଙ୍କର ଅହେତୁକ ଆକର୍ଷଣ ଥିବା କଥା 'ସତ୍ୟ ଆମ୍ବ' ଉପାଖ୍ୟାନରୁ ଜଣାଯାଏ । ଏ ଯୁଗରେ ଦ୍ରୌପଦୀମାନେ ଆଉ ଲୁଚାଛପା କରି ପ୍ରେମ କଥା ମନରେ ଚପାଇ ରଖୁନାହାନ୍ତି, ସିଧା ସଳଖ କୋର୍ଟ କଚେରୀରେ ମଧ୍ୟ କହୁଛନ୍ତି ।

ଏବେ ଏ ଯୁଗରେ ପ୍ରେମୀଯୁଗଳ ଆଉ ଯୁବକ ଯୁବତୀ ନୁହନ୍ତି କେବଳ । କେତେବେଳେ କିଶୋର କିଶୋରୀ ତ କେବେ ପୁଣି ବୃଦ୍ଧ ବୃଦ୍ଧା । ଦୁଇଜଣ ବୃଦ୍ଧ ବୃଦ୍ଧା କିଭଳି ବୟସରେ ଅପରାହ୍ଣରେ ଯୁବାବସ୍ଥାରେ ପ୍ରେମକୁ ସଂଜୀବନୀ ମନ୍ତ୍ର ପାଣି ଛିଞ୍ଚି ପରସ୍ପର ପରିବାରକୁ ଛାଡ଼ି ଥାନାବାବୁଙ୍କ ହେପାଜତରେ ବିବାହ କଲେ ଏଠାରେ ଆମେ ଜାଣିଛେ ।

ସେହିପରି ଅନ୍ୟ ଏକ ସମ୍ବାଦରୁ ଜଣାଯାଏ, ମଧ୍ୟବୟସ୍କ ପ୍ରେମୀ ଯୁଗଳ ଫେରାର । ଅର୍ଥାତ୍ ଜଣେ ପାଞ୍ଚଟି ସନ୍ତାନର ଜନନୀ ତା'ର ପ୍ରେମିକ ସହ ଫେରାର ହୋଇଛି । ପ୍ରେମିକ ମଧ୍ୟ ତିନୋଟି ସନ୍ତାନର ଜନକ । ପ୍ରେମିକା ପାଞ୍ଚଟି ସନ୍ତାନକୁ ଛାଡ଼ି ଚାଲିଯାଇଛି ସତ କିନ୍ତୁ ନେଇଯାଇଛି ନିଜର ଲୁଗାପଟା, ଗହଣାଗାଣ୍ଠି ଆଉ କିଛି ନଗଦ କ୍ୟାସ୍ । ଏତେ ସବୁ ଅବତାରଣା

ପରେ ଆମେ ଏଇ ସିଦ୍ଧାନ୍ତରେ ପହଞ୍ଚିଲୁ ଯେ, ପ୍ରେମ ପୁରାଣରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଦେଖାଦେଇଛି । ପ୍ରେମର ସୁନାମୀ ଏବେ କେତେବେଳେ କେଉଁଠି ନା କେଉଁଠି ମାଡ଼ି ଆସିବାର ସମ୍ଭାବନା ଅଛି । ବିଧାୟକମାନେ ଏବେ ସେକ୍ସ ସ୍କାଣ୍ଡାଲରେ ଜଡ଼ିତ ଥିବା କଥା ଶୁଣୁଛେ ! ଆଉ ଖାଲି ଶୁଣିବାକୁ ବାକି ରହିଲା ଆମ ବିଧାନ ସଭା ବା ବିଧାନ ପରିଷଦରୁ ଅଥବା ସଚିବାଳୟରୁ ପ୍ରେମିକ-ପ୍ରେମିକା ଫେରାର ହେବାର ସମ୍ବାଦ । ସେଇ ସୁଦିନକୁ ବା ଦୁର୍ଦ୍ଦିନକୁ ଆମେ ଜନ ସାଧାରଣ ଅପେକ୍ଷା କରି ରହିବା.... ରହିବା.... ।

●

# ପ୍ରେମକୁ ନେଇ କିଛି କଥା

ଏବର୍ଷ ଏକ ପ୍ରତିଷ୍ଠିତ ପତ୍ରିକା ପ୍ରେମକୁ ନେଇ କିଛି ନୂତନ ତଥ୍ୟ ଓ ସଂଜ୍ଞା ନିରୂପଣ କରାଇବାରେ ସମର୍ଥ ହୋଇଛନ୍ତି । ଏହା ପତ୍ରିକାର ଏକ ସାଧୁ ଉଦ୍ୟମ । କାହାର ପ୍ରେମ କଥା ମନକୁ ଆସିଲେ ମନେପଡ଼େ ଜଣେ ବିଶିଷ୍ଟ ଗୀତିକାରଙ୍କ ଗୀତର ଧାଡ଼ିଟିଏ "ପ୍ରେମ ବୋଲି ଯେଉଁ ଦୁଇଟି ଅକ୍ଷର କିଏ ଶିଖାଇଲା ମୋତେ ।" ପ୍ରେମକୁ ଏବେ କେବଳ ଦେହଜ ବୋଲି ଧରାଯାଏ । ସାତ୍ତ୍ୱିକ ବିକାର ସାଙ୍ଗକୁ ଶରୀରର ବିଚିତ୍ର ରୋମାଞ୍ଚ ଏବଂ ମନରେ ଅପୂର୍ବ ସ୍ୱର୍ଗୀୟ ପୁଲକ ମିଶିଲେ ଏକ ସାର୍ଥକ ପ୍ରେମର ସୂଚନା ଆମେ ପାଇଥାଉ । ଏଇ ସାର୍ଥକ ପ୍ରେମକୁ ନେଇ ରାମାୟଣ ମହାଭାରତଠାରୁ ଆରମ୍ଭ କରି ଭାଗବତର ରାସଲୀଳା ପୁଣି ସେକ୍ସପିୟରଙ୍କ ନାଟକଠାରୁ ଆରମ୍ଭ କରି ମେହେରଙ୍କ ପ୍ରଣୟ ବଲ୍ଲରୀ କାବ୍ୟଯାଏ ଏପରିକି ଏ ଯୁଗର ମାନସିଂଙ୍କ ଇରାନୀ କିଶୋରୀ ଯାଏ ଅନେକ କାବ୍ୟ କବିତା, ନାଟକ ଲେଖାଯାଇଛି । ପ୍ରେମକୁ ନେଇ ରାଶି ରାଶି ପ୍ରବନ୍ଧ ମଧ୍ୟ ଲେଖା ଯାଇଛି । ହେଲେ କ୍ୟାସେଟୀୟ ପ୍ରେମ ଅଥବା ଫଟୋ ଆଲବମୀୟ ପ୍ରେମ ଆମ ରାଜ୍ୟର ଏକ ନୂତନ ଉଦ୍ଭାବନ । ଏଇ ପ୍ରେମକୁ ଅଥବା ଆଲବମ୍‌ରେ ପ୍ରେମ ଦୃଶ୍ୟଗୁଡ଼ିକୁ ଦେଖିଲେ ମନରେ ଯେଉଁ କୁତୁକୁତୁ ଭାବ ସୃଷ୍ଟି ହୁଏ ତାହା ମଧ୍ୟ ଏ ଯୁଗର ପ୍ରେମର ଏକ ସଫଳ ରୂପାୟନ ଯଦିଓ ଏହା ଶାଶ୍ୱତ ନୁହେଁ । ତେବେ ଆମ ବିଚାରରେ ରାଧାକୃଷ୍ଣଙ୍କ ପରକୀୟା ପ୍ରେମର ଏହା ଏକ ନବୀନ ସଂସ୍କରଣ । ବିଶେଷତଃ ଏଇ ପ୍ରେମରେ ବାଉଳା ହୋଇ ପ୍ରେମିକ କେତେବେଳେ ଖୁଣ୍ଟକୁ ଆଲିଙ୍ଗନ କରୁଛି ତ କେତେବେଳେ ପଥର ସ୍ତମ୍ଭରେ ଅଙ୍କିତ ନର୍ତ୍ତକୀକୁ ଚୁମ୍ବନ ପରେ ଚୁମ୍ବନ ଦେଇ ଚାଲିଛି ।

ଏଣୁ ପ୍ରେମର ରୂପାନ୍ତର ଘଟୁଛି । ପ୍ରେମର ସ୍ୱରୂପ ବଦଳି ଯାଉଛି ସିନା ହେଲେ ପ୍ରେମର ପରିଭାଷା ବଦଳି ନାହିଁ । ଏକଥାକୁ ଏ ଯୁଗର ପ୍ରେମିକ ପ୍ରେମିକା ପାର୍କରେ ଥାଇ ଟିକେ ଭାବିବେକି ?

●

# ରାଣୀ ମହୁମାଛି

ରାଣୀ ମହୁମାଛି କଥା ଆମେ ମହୁଚାଷ ବେଳେ ପଢୁଥିଲୁ । ରାଣୀ ମହୁମାଛିଟି ମହୁଫେଣାରେ ଥାଏ । ଶ୍ରମିକ ମହୁମାଛିମାନେ ପ୍ରାଣପ୍ରଣେ ଫୁଲରୁ ଫୁଲକୁ ଉଡ଼ି ମହୁ ସଂଗ୍ରହ କରି ନଖରେ ନେଇ ମହୁଫେଣାରେ ସଞ୍ଚନ୍ତି । ସମ୍ଭବତଃ ରାଣୀ ମହୁମାଛି ଶ୍ରମିକ ମହୁମାଛିଙ୍କୁ ଶ୍ରମ ଓ ସଂଗ୍ରହ ପାଇଁ ପ୍ରେରଣା ଯୋଗାଏ ।

ଶୁଣାଯାଏ ପ୍ରତ୍ୟେକ ବ୍ୟକ୍ତିର ପଛରେ କାହାର ନା କାହାର ପ୍ରେରଣା ଓ ପ୍ରୋତ୍ସାହନ ଅବଶ୍ୟ ଥାଏ । ଠିକ୍ ସେମିତି ଏବେ ଏବେ ଯେଉଁ ରାଣୀ ମହୁମାଛି ମାନେ ଯେକ୍ସ ଫେଣାରେ ରହି କଣ୍ଟ୍ରାକ୍ଟର, ଇଂଜିନିୟର ଠାରୁ ଆରମ୍ଭ କରି ସାଧାରଣ ସ୍ତରର ପ୍ରେମିକ ଯାଏ ବ୍ୟକ୍ତିମାନଙ୍କୁ ଶ୍ରମିକ ମହୁମାଛି ସଜାଇ ଅର୍ଥ ସବୁ ସଂଗ୍ରହ କରୁଛନ୍ତି ସେମାନଙ୍କ ପ୍ରେରଣା ଦାତା କିଏ ? ଏ ପ୍ରଶ୍ନର ଉତ୍ତର ଏବେ ସହଜ ହେବାରେ ଲାଗିଲାଣି । ପ୍ରତି ସେକ୍ସ ସ୍କାଣ୍ଡାଲ ପଛରେ ଜଣେ ଜଣେ ପ୍ରଭାବ ଶାଳୀ ବ୍ୟକ୍ତିର ପ୍ରୋତ୍ସାହନ ରହିଛି । ବିଶେଷତଃ ରାଜନୈତିକ ପ୍ରୋତ୍ସାହନ ସେକ୍ସ ସ୍କାଣ୍ଡାଲକୁ ଉଜ୍ଜିବୀତ କରି ରଖୁଛି ।

ଏବେ ଏବେ ଜଣେ ରାଣୀମହୁମାଛିଙ୍କ କଥାକୁ ନେଇ ବେଶ୍ ଚର୍ଚ୍ଚା । ଶୁଣାଯାଏ ଜଣେ ରାଜନେତା ତାଙ୍କୁ ବିଦେଶ ଗସ୍ତରେ ମଧ୍ୟ ସାମିଲ କରିଥିଲେ । ସେ ଗଲେକି ନା ଆଗକୁ ଜଣାନାହିଁ । କିନ୍ତୁ ତାଙ୍କ ତଥା କଥିତ ଇଞ୍ଜିନିୟର ସ୍ୱାମୀ ତାଙ୍କରି କରୁଣାରୁ ରାଜନେତାଙ୍କ ଆର୍ଶୀବାଦ ଭାଜନ ହୋଇ ଦୀର୍ଘଦିନ ଧରି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରହି ସରକାରୀ ଅର୍ଥକୁ ଲୁଣ୍ଠନ କରୁଛନ୍ତି । ବାଃ କି ସୁନ୍ଦର ଯୋଗାଯୋଗ ଦେଖିଲେ । ସ୍ୱାମୀଙ୍କର ଜନସାଧାରଣଙ୍କ ଠୁଁ ଅର୍ଥ ଲୁଣ୍ଠନ । ପତ୍ନୀଙ୍କର ଯୌନ-ଶୋଷଣ ବ୍ୟବସ୍ଥାପକ ସାଙ୍ଗକୁ ଉଭୟ ପତି ପତ୍ନୀଙ୍କର ରାଜନେତାଙ୍କୁ ଶୋଷଣ ଏକ ସୁନ୍ଦର ବିଧି ବ୍ୟବସ୍ଥା ପରିଣତି ହୋଇଛି ।

ଏପରିକି ପୋଲିସ୍ ବିଭାଗରେ ରାଣୀଙ୍କୁ ସୁରକ୍ଷା ଦେବା ପାଇଁ ସଦା ତତ୍ପର । ପ୍ରକୃତରେ ଚୋର ହରଣ ସମ୍ଭବ ହେବ । କିନ୍ତୁ ମାର ମାରଣ କଣ ସମ୍ଭବ । କେବଳ ଧୂର୍ଜଟୀ ସିନା ଏହା କରିପାରିବେ । ସାଧାରଣ ଜଣେ ଏହା କରିବା କଣ ସମ୍ଭବ !

●

# ମୁଁ : ମୋ ସ୍ତ୍ରୀ

ମୁଁ ମୋ ସ୍ତ୍ରୀ ଯେତେବେଳେ ନିରୋଳାରେ ଟିକେ କଥା ହେବାକୁ ବସୁ ଦୃଷ୍ଟ ନାତି ନାତୁଣି ବଡ଼ ଡିଷ୍ଟର୍ବ କରନ୍ତି । କଥା ପଦେ କହିବାକୁ ଦିଅନ୍ତି ନାହିଁ । ତେବେ ସେମାନେ ସ୍କୁଲକୁ ଚାଲିଯିବାପରେ ଟିକେ ନିରୋଳା ସମୟ ମିଳେ ।

ମୁଁ ଆଗ କଥାଟା ଆରମ୍ଭ କରେ । ଆଚ୍ଛା ରାମ ସୀତା ବାପାଙ୍କ ଆଦେଶ ପାଳି ବଣକୁ ଗଲେ । ତୁମେ ସୀତାପରି କଣ ମୋ ସହିତ ବଣକୁ ଯାଇପାରିବ ? ମୋର ଏବେ ଇଚ୍ଛା ହୋଇଛି ମୁଁ ବାନପ୍ରସ୍ଥ ଅବଲମ୍ବନ କରିବି ।

ସ୍ତ୍ରୀ କହେ – ଛାଡ଼ ଛାଡ଼ ! ତୁମ କଥା ମୋତେ ବେଶ୍ ଜଣା । ଏଯାଏଁ ରାସ୍ତାରେ ସୁନ୍ଦରୀ ବୟସ୍କା ମହିଳାଟିଏ ଚାଲିଗଲେ ତୁମ ଆଖି ଲାଖି ରହୁଛି । ତୁମେ ପୁଣି ବାନପ୍ରସ୍ଥ ଯିବ ।

ମୁଁ ତଥାପି ଜୋର ଦେଇ କହେ ଆଚ୍ଛା ଧରାଯାଉ ମୁଁ ବାନପ୍ରସ୍ଥ ଯିବି–ତୁମେ କଣ ମୋ ସାଙ୍ଗରେ ଯିବ । ବଣରେ ଆଶ୍ରମ କରି ରହିବା ଠିକ୍ ରାମ ସୀତା ପଞ୍ଚବଟୀରେ ରହିଲାପରି ।

ଏ କଥା ଶୁଣି ସେ କାଶିବା ଆରମ୍ଭ କରିଦିଅନ୍ତି । କହନ୍ତି – ଦେଖ ମୁଁ ଆଜ୍‌ମା ରୋଗୀ । ମୋ ସାଙ୍ଗରେ ବକର ବକର ହୁଅନା । ବେଶୀ ରାଗିଗଲେ ମୋର କାଶ ବାହାରିବ ।

ଅନ୍ୟଦିନେ ଥରେ କହିଲି – ଆଚ୍ଛା ଫକୀର ମୋହନ ସେନାପତିଙ୍କ ସୁଲୋଚନା ତୁମେ ହୋଇପାରିବ । ମାନେ ଚନ୍ଦ୍ରମଣି ବାବୁଙ୍କର ମଦ ନିଶା ଆଉ ଉସ୍‌ମାନତାରା ଘରକୁ ଯା–ଆସ ଅଭ୍ୟାସ ଛାଞ୍ଚୁଣି ମାଡ଼ରେ ଛଡ଼ାଇ ଦେଇପାରିବ ।

ଏକଥା ଶୁଣି ଘରଣୀ ମୋର ଟିକିଏ ଗେହ୍ଲେଇ ହୋଇ କହନ୍ତି । ତୁମେ ମୋତେ ବୋଧହୁଏ ପରୀକ୍ଷା କରୁଛ । ହଇହୋ ତୁମେ ତ ଏଯାଏଁ ବିଡ଼ି ଖଣ୍ଡିଏ ଟାଣିବାରେ ଦେଖିନାହିଁ । କି ଗୁଡ଼ାଖୁ ଟିକେ ନେଇ ଦାନ୍ତ ଘଷିବାର ମୁଁ ଦେଖିନାହିଁ । ସେଇଟା ମୋର ସୌଭାଗ୍ୟ । ତେଣୁ ମୋର ସୁଲୋଚନା ହେବା କଣ ଆବଶ୍ୟକ ।

ଶେଷରେ ପଚାରିଲି ସାବିତ୍ରୀ ହୋଇ ତୁମେ ମୋତେ ଯମ ପାଖରୁ ଛଡ଼ାଇ ଆଣିପାରିବ । ସେ ଲୁହ ଛଳ ଛଳ ଆଖିକରି କହିଲା – ଦେଖ ଏଁ ଅଶୁଭ କଥା ଗୁଡ଼ା ତୁଣ୍ଡରେ ଧରନା । ତେବେ ମୋର ଦୃଢ଼ ବିଶ୍ୱାସ ମୁଁ ତୁମ ଆଗରୁ ଚାଲିଯିବି । ଏଣୁ ଯମ ସାଙ୍ଗରେ ଟକ୍କର ଦେବାର ଚାନ୍ସ ନାହିଁ ।

●

# ଶ୍ରୀମତୀ କମ୍ ନୁହନ୍ତି !

ଆଜ୍ଞା ଇ.ଟିଭି. ରେ କାର୍ଯ୍ୟକ୍ରମଟିଏ ଦେଖିଲି ଶ୍ରୀମତୀ କମ୍ ନୁହନ୍ତି । ସେଇଥିରୁ ମୋର ମନେ ପଡ଼ିଲା ଆମ ସାହିତ୍ୟରେ ଶ୍ରୀମତୀ କମ୍ ନୁହନ୍ତି । ଏଇ ଯେମିତି ଫକୀରମୋହନଙ୍କ ସୁଲୋଚନା । ସେତ କମ୍ ନୁହନ୍ତି । ଛାଞ୍ଚୁଣି ମାଡ଼ ଦେଇ ଶ୍ରୀମାନ୍‌ଙ୍କ ମଦନିଶା ଛଡ଼େଇ ଦେଲେ ଶ୍ରୀମତୀ ସୁଲୋଚନା ।

ଇଯେତ ଗଲା ସାହିତ୍ୟ କଥା । କାବ୍ୟ କବିତାରେ ଶୁଣାଯାଏ କବିମାନଙ୍କ ଶ୍ରୀମତୀ ହେଉଛନ୍ତି ସେମାନଙ୍କ ପ୍ରେରଣାର ଉତ୍ସ । ସେଥିପାଇଁ ଅନେକ ସମୟରେ ଆମେ ଶୁଣିଥାନ୍ତି ଗୋଟିଏ କଥା ଜଣେ ବ୍ୟକ୍ତିର ସଫଳତା ପଛରେ ଜଣେ ନାରୀର ପ୍ରେରଣା ରହିଥାଏ । ହେଲେ ନାରୀକୁ ଆଜି ନାରୀର ମର୍ଯ୍ୟାଦା ଆମେ ଦେଉଛେ ତ ।

ଆଜ୍ଞା ସମସ୍ତଙ୍କ ଜୀବରେ କଣ ଏକଥା ଘଟିଥାଏ । ଏଇ ଦେଖନ୍ତୁ ନା, ମୋ ଜୀବନରେ ମୋ ଶ୍ରୀମତୀ କଥା କହୁଛି । ମୁଁ ଯଦି କେବେ ଶ୍ରୀମତୀଙ୍କୁ କବିତାଟିଏ କି ଗୀତଟିଏ ଲେଖି ଦେଖାଏ, ସେ ତ ଶୁଣିବା ଦୂରେ ଥାଉ ମୋତେ କହନ୍ତି ଥାଉ ଥାଉ ତୁମର ସେ କବିତା । ତାକୁ ଶୁଣିଲେ କଣ ପେଟ ପୁରିଯିବ । ମୁଁ ଯାଏଁ ରୋଷେଇ କରିବି । ଗେଫା ମାରିବ । ବିଳମ୍ବ ହେଲେ ସହିପାରିବ ତ ଭୋକର ଦାଉ । ତା ଛଡ଼ା ଓଡ଼ିଆରେ କି କବିତା ଲେଖା ଯାଉଛି ଯେ ତାକୁ ପଢ଼ିବ ମଣିଷ । ମୁଁ ତ ପଢ଼ି କିଛି ବୁଝିପାରୁନି । କେବେ ଯଦି ପୁସ୍ତକ ମେଳାକୁ ଯାଇ କେତେଖଣ୍ଡ ଭଲ ଭଲ ବହି କିଣି ଆଣି ଶ୍ରୀମତୀଙ୍କୁ ଦେଖାଏ, ଶ୍ରୀମତୀ କୁହନ୍ତି, ରିଟାୟାର୍ଡ଼ ହେଲ, ପେନ୍‌ସନ୍ ଟଙ୍କାଟା ଏହି ବହିକିଣାରେ ସାରିଦିଅ । ତୁମକୁ ଆଉ ପାରିହେବନି । ମୁଁ ପୁଣି କହେ, ତୁମର ଶାଢ଼ି ଗହଣା କିଣିବାରେ ପଇସା ଖଟାଇବାକୁ କିମ୍ବା ନାତି ନାତୁଣୀଙ୍କୁ ବିସ୍କୁଟ୍, ଚକ୍‌ଲେଟ, ଖୁଆଇବାକୁ ମୁଁ କେବେ କୁଣ୍ଠିତ ହୋଇନାହିଁ । ସେ ପୁଣି କହନ୍ତି ଏ ସବୁ ତୁମର କର୍ତ୍ତବ୍ୟ । ନିଜେ ତ ଲେଖୁଛ, ବହି ପ୍ରକାଶ କରୁଛ । ଅନ୍ୟ ବହିଗୁଡ଼ା ଆଣି ଘର ଭର୍ତ୍ତି କଲଣି ଯେ ଶୋଇବାକୁ ଜାଗାନାହିଁ । ଓଡିଆ ବହି ପଢୁଛ ନା ଖାଲି ଦେଖେଇ ହେଉଛମ । କେବେ ଯଦି କୌଣସି ସାରସ୍ୱତ ଅନୁଷ୍ଠାନ ମୋତେ ମାନପତ୍ର ଅବା ପୁରସ୍କାର ଦେଇ ସମ୍ବର୍ଦ୍ଧିତ କରନ୍ତି ଶ୍ରୀମତୀ ପ୍ରଥମେ ପଚାରନ୍ତି ତୁମେ ସେହି ଅନୁଷ୍ଠାନକୁ କେତେ ଟଙ୍କା ଚାନ୍ଦା ଦେଇଛ । ଶ୍ରୀମତୀଙ୍କ କଥା ମନ ଦେଇ ଶୁଣେ । ନିରୋଳାରେ ଭାବେ ପ୍ରକୃତରେ ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ପାଇଁ ସମସ୍ତ ଯଦି କିଛି କରନ୍ତେ ତାହାଲେ ମୋ ଶ୍ରୀମତୀଙ୍କ ମନରେ ଏପରି ସନ୍ଦେହର ଧୂଳିଗୁଡ଼ା ନିଶ୍ଚିତ ଝରିପଡ଼ନ୍ତା । ଏଣୁ ଶ୍ରୀମତୀଙ୍କୁ ଦୋଷ ଦେଇ ଲାଭ ନାହିଁ ।

●

# ଦେହି ମାଂ ବିଳାସ ବ୍ୟସନଂ

ଶୁଣାଯାଏ ଗୀତ ଗୋବିନ୍ଦର ଗୋଟିଏ ପାଦ ପୂରଣ ପାଇଁ ଜୟଦେବ ବ୍ୟସ୍ତ ହୋଇ ତରବରରେ ଗାଧୋଇବାକୁ ଚାଲିଗଲେ । ସେହି ଅବସରରେ ସ୍ୱୟଂ ଭଗବାନ ଜୟଦେବ ବେଶରେ ଆସି ପଦ୍ମାଙ୍କଠାରୁ ପୋଥିଖେଦା ଆଉ ଲେଖନୀ ନେଇ ପାଦ ପୂରଣ କରି ଚାଲିଗଲେ । ପଦଟି ଥିଲା – ଦେହି ପଦପଲ୍ଲବ ମୁଦାରଂ ।

ବୋଧ ହୁଏ କବି ଜୟଦେବଙ୍କ ନିଷ୍ପାପର ସାଧନା ଓ କାବ୍ୟର ପ୍ରୀତି ଦେଖି ସ୍ୱୟଂ ଭଗବାନ ଅଭିଭୂତ ହୋଇ ଏପରି ଏକ ସୁଚିନ୍ତିତ ପଦକ୍ଷେପ ନେଇଥିଲେ ।

ମାତ୍ର ଆଜିର କବି ଗୋଷ୍ଠୀ ମଧ୍ୟରେ ସେ ନିଷ୍ଠା ଆଉ ସାଧନା ତ ନାହିଁ । ତେଣୁ ଅଳ୍ପ ଲେଖି କିଛି ନପଢ଼ି ବଡ଼ ବଡ଼ ପୁରସ୍କାର ଆଶାରେ ପ୍ରାୟ ସମସ୍ତେ ଲବି କରିବାରେ ବ୍ୟସ୍ତ । କବିଙ୍କର ଏ ବିକଳ ଅବସ୍ଥା ଦେଖି ପୁରସ୍କାର ଦେବା ବାଲାଙ୍କ ଭାଉ ମଧ୍ୟ ଖୁବ୍ ବଢ଼ି ଯାଇଛି । ସରକାରୀ ସ୍ତରରେ ବଡ଼ ବଡ଼ ପୁରସ୍କାର ଦେବା ପାଇଁତ ସବୁଠୁ ବେଶୀ ଟଣାଓଟରା । ରାଜଧାନୀ ପୁସ୍ତକମେଳା ହେଲାକି କଟକ ପୁସ୍ତକ ମେଳା ହେଲା ଅବା ବାଲେଶ୍ୱର ପୁସ୍ତକ ମେଳା ହେଲା ସେଠାରେ ମଧ୍ୟ ଏବେ କାହା ବହି ପୁରସ୍କୃତ ହେବ ସେ ନେଇ କବି ଲେଖକମାନଙ୍କ ମଧ୍ୟରେ ବେଶ କଙ୍କଡ଼ା ପ୍ରେମ । ଆଉ କଙ୍କଡ଼ା ପ୍ରେମ ଦେଖିବାକୁ ପୁରସ୍କାର ନିର୍ବାଚନ କମିଟି ମଧ୍ୟ କଚ୍ଛପ ନୀତି ଅନୁସରଣ କରୁଛନ୍ତି ।

ଯେଉଁ କବି ଓ ଲେଖକମାନେ ପୁରସ୍କୃତ ହେଉଛନ୍ତି ସେମାନେ ମଧ୍ୟ ଅଳ୍ପ ବହୁତେ ଚାହାନ୍ତି (ସମସ୍ତେ ନୁହନ୍ତି) ପୁରସ୍କାର ମଣ୍ଡପରେ ଟିକେ ଫୁଲ୍‌କା ଦେଖାଇ ବସନ୍ତେ । ସେମାନେ ଟିକେ ଭଲ ହୋଟେଲରେ ରହନ୍ତେ – ଅନ୍ତତ୍ ଗୋଟେ ଦିଟା ଦିନ ବିଳାସ ବ୍ୟସନରେ କାଳ କାଟନ୍ତେ । ଅନ୍ୟ କଥାରେ କହିବାକୁ ଗଲେ ଦେହିଂମାଂ ବିଳାସ ବ୍ୟସନ ମନ୍ତ୍ର ଜପନ୍ତେ । ଜୀବନ ସାରାତ ଏମାନେ ସମାଜକୁ ଆଦର୍ଶ କଥା ଶୁଣାଇ ଶୁଣାଇ ଆସିଲେ, ଦିଗ୍‌ଦର୍ଶନ ଦେବାପାଇଁ ବଡ଼ ବଡ଼ କଥା ଲୋକଙ୍କ ପାଇଁ ଲେଖିଲେ । ହେଲେ ଦିନ ଗୋଟେ ଦି'ଟା ଏମାନେ ପୁରସ୍କୃତ କରିବା ସମୟରେ ବିଳାସ ବ୍ୟସନରେ ଟିକେ ରହିଲେ କଣ କ୍ଷତି ହୁଅନ୍ତା ! ତେଣୁ ହେ ବିଚାରକ ମଣ୍ଡଳୀ– ହେ ପୁରସ୍କାର ଦାତା ଟିକେ ଶୁଣିବା ହୁଅନ୍ତୁ କବିମାନଙ୍କ ଏହି ଶରୀର ଅନ୍ତର୍ଦାହକୁ ଟିକେ ବୁଝନ୍ତୁ ! ବଡ଼ ବଡ଼ ଶ୍ୱେତ ହସ୍ତୀମାନଙ୍କର ସମ୍ମିଳନୀ ହେଲେ କେତେ ବଡ଼ ବଡ଼ ହୋଟେଲ ରିଜର୍ଭ ହୁଏ – ଖାନା ପିନା–ରହେନା ଓ ଶୋନା – କେଡ଼େ ମଜାଦାର ହୁଏ । ବେଳେ ବେଳେ ସୁରା–ସାକିର ବ୍ୟବସ୍ଥାପନାରେ ଊଣା ନଥାଏ । ସେହିପରି ରାଜନେତାମାନେ ନିର୍ବାଚନ ପୂର୍ବରୁ ଟିକେଟ ପାଇବାପାଇଁ

ଯେଉଁ କର୍ମୀ ସମ୍ମିଳନୀ କରନ୍ତି – ରାଜଧାନୀରେ ମଟର, ଟ୍ରେକର, ଟ୍ରକରେ ବୋଝେଇ କରି ନେଇ ଲୋକ ଏକାଠି କରନ୍ତି । ସେଠି ଦେଖିଲେ ନେତାମାନେ ବିଳାସ ବ୍ୟସନରେ ଚର୍ବ୍ୟ ଚୋଷ୍ୟ ଲେହରେ ମଜ୍ଜି ଥିଲାବେଳେ ବିଚରା ବାସ୍ତୁହରା କର୍ମୀମାନେ ଖାଆନ୍ତି ଭାତ ଆଉ ଅଲଣା ଡାଲମା । ସାଧାରଣ ଜନତା ଖାଲି ପେଟରେ ବି ଫେରନ୍ତି । ଠିକ୍ ସେହିପରି କୌଣସି ସାହିତ୍ୟ ଅନୁଷ୍ଠାନ ବା ସାଂସ୍କୃତିକ ଅନୁଷ୍ଠାନରେ ଯେଉଁ ଅସାହିତ୍ୟିକ ନେତାମାନେ ଆସି ଭାଷଣ ବାଜି କରନ୍ତି ସେହିମାନଙ୍କ ନାଁ ଖବର କାଗଜ ପୃଷ୍ଠା ମଣ୍ଡନ କରେ, ରେଡିଓ ଓ ଟି.ଭି. ମଧ୍ୟ ସେମାନଙ୍କ ଗୁଣ ଗାନ କରେ । ଅଥଚ ପୁରସ୍କୃତ ପ୍ରତିଭାମାନଙ୍କ ନାମ ଧରାଯାଏନା – ଏହି ଗଣମାଧ୍ୟମ ମାନଙ୍କରେ । ଭାବିଲ ଦେଖି ବିଚରା ପ୍ରତିଭାଧରମାନଙ୍କ ଅବସ୍ଥା କଣ ହେଉଥିବ !

ତେଣୁ ଆମ ବିଚାରରେ କବି ଲେଖକମାନେ ଲେଖନୀ ଚାଳନା କରି ଜୟଦେବ ଭଗବାନଙ୍କ ଆର୍ଶିବାଦ ସ୍ୱରୂପ ଦେହିମାଂ ପଦପଲ୍ଲବ ମୁଦାରଂ ରେ ସନ୍ତୁଷ୍ଟ ରହିବା ଭଲ । ଦେହି ମାଂ ବିଳାସ ବ୍ୟସନଂ ପ୍ରତି ମନ ବଳାଇବା ଉଚିତ୍ ନୁହେଁ । ସିଏ ପରା କବି ଲେଖକଙ୍କ ପାଇଁ ଆକାଶ କୁସୁମ !!

ନା– କଣ କହୁଛନ୍ତି ଆଜ୍ଞା !!

●

# ଆଧୁନିକ ଗୀତାର ସଂପଦଯୋଗ

**ଗୀ**ତାରେ ଆମେ କେତୋଟି ଯୋଗର ନାମ ଶୁଣିଥାଉ । ଏଇ ଯେମିତି ସାଂଖ୍ୟଯୋଗ, କର୍ମଯୋଗ,ଧ୍ୟାନଯୋଗ, ଭକ୍ତିଯୋଗ, ମୋକ୍ଷଯୋଗ, ବିଷାଦଯୋଗ ଇତ୍ୟାଦି । ସ୍ୱାମୀ ଶିବାନନ୍ଦଙ୍କ ଦୃଷ୍ଟିରେ ଗୀତାର ଅଠରଗୋଟି ଯୋଗର ବର୍ଣ୍ଣନା ରହିଛି । କିନ୍ତୁ ଗୀତା ଯଦି ଏ ଯୁଗରେ ଲେଖାଯାଆନ୍ତା, ତାହେଲେ ସେଥିରେ ଏସବୁ ଯୋଗର ନାମ ନିଶାନ ବି ନଥାନ୍ତା । ବରଂ ମୋ ବିଚାରରେ ଆଧୁନିକ ଗୀତାରେ ସନ୍ନିବିଷ୍ଟ ଯୋଗଗୁଡ଼ିକ ହେବ ସଂପଦଯୋଗ, ଚାରାଘୋଟଲା ଯୋଗ, ବୋଫର୍ସ ଯୋଗ, ପଲିଥିନ୍ ସ୍କାମ ଯୋଗ ଏବଂ ସର୍ବାଧୁନିକ ତେହେଲ୍କା ଡଟ୍‌କମ ଯୋଗ । ତେବେ ପ୍ରତ୍ୟେକଟି ଯୋଗ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଆଲୋଚନା ବଡ଼ ସମୟ ସାପେକ୍ଷ ଏବଂ ପ୍ରବନ୍ଧର କଳେବରକୁ ଦୃଷ୍ଟିରେ ରଖି ଆଲୋଚନା ସ୍ପୃହଣୀୟ ମଧ୍ୟ ନୁହେଁ । ମୁଁ କେବଳ ଚୁମ୍ବକରେ ଏଠାରେ ସମ୍ପଦ ଯୋଗର ଆଲୋଚନା କରିବି କାରଣ ବର୍ଣ୍ଣିତ ଯୋଗ ଗୁଡ଼ିକର ମୂଳଧାର ହେଲା ସମ୍ପଦ ।

ବିଷାଦ ଯୋଗରେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ କହିଥିଲେ – ମୋର ଅଙ୍ଗ ପ୍ରତ୍ୟଙ୍ଗ ଥରି ଉଠୁଛି, ମୋର ତଣ୍ଟି ଶୁଖିଯାଉଛି, ମୋର ଶରୀରରେ କମ୍ପନ ସୃଷ୍ଟି ହେଉଛି, ମୋର ରୋମ ଟାଙ୍କୁରି

ଉଠୁଛି । ଗାଣ୍ଡିବ ଧନୁ ମୋ ହାତରୁ ଖସି ପଡୁଛି । ତିନି ଭୁବନରେ ଆଧିପତ୍ୟ ପ୍ରତିଷ୍ଠା ପାଇଁ ମୁଁ ମୋର ଜ୍ଞାତି କୁଟୁମ୍ବମାନଙ୍କୁ ବଧ କରି ପାରିବେନି ।

ଏହା ଗଲା ବିଷାଦ ଯୁଗର ବାଣୀ । ଏ ଯୁଗର ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ କଣ କହନ୍ତେ ଆପଣ ଭାବୁଛନ୍ତି । ମୁଁ ଭାବୁଛି – ଏ ଯୁଗ ଅର୍ଜ୍ଜୁନ କହନ୍ତେ – ହେ ମୋର ରାଜନୈତିକ ଗୁରୁଦେବ ମୋତେ ଏପରି ବିଦ୍ୟା ଶିଖାଇ ଦିଅନ୍ତୁ ଯେପରି ମୁଁ ଅନ୍ୟ ସମସ୍ତ ରାଜନୀତିଜ୍ଞ ମାନଙ୍କୁ ବଶୀକରଣ ବିଦ୍ୟାରେ ସ୍ୱ ଅଧିନକୁ ଆଣେ କିମ୍ବା ଦମନୀକରଣ ବିଦ୍ୟାରେ ଦମନ ଅଥବା ମରଣ ବିଦ୍ୟାରେ ମାରିଦିଏ । ଏଇ ମାରଣ ବିଦ୍ୟାପାଇଁ ଉପଯୁକ୍ତ ଗୁଣ୍ଡାଚୟନ, ଡକାୟତ ଦଳଗଠନ ପିଣ୍ଡାରି ସମ ଠକ ସଂଗଠନ ଆଦି ନିମିତ୍ତ ହେ ଗୁରୁଦେବ ମୋତେ ବୀଜମନ୍ତ୍ର ପ୍ରଦାନ କରିବା ହୁଅନ୍ତୁ ।

ହେ ମୋର ଗୁରୁ କୃଷ୍ଣ, ମଦ ନିଗମ ଗଠନ ପୂର୍ବକ ସୋମରସର ପ୍ରଳୟ ରଚି, ସବୁଜ ବନୀକରଣ ଆଳରେ ବୃକ୍ଷରୋପଣ ପୂର୍ବରୁ ବୃକ୍ଷ ହରଣ ବିଦ୍ୟା ଓ ସଘନଚାଷ ନିମିତ୍ତ ଉନ୍ନତ ବିହନ ନାମରେ ବାଲୁଙ୍ଗା ପ୍ରଦାନ କରି କୃଷକକୁଳ ମର୍ଦ୍ଦନ ଆଦି କାର୍ଯ୍ୟ ସାଧନ ପାଇଁ ମୋତେ ଉପଯୁକ୍ତ ଶିକ୍ଷା ଦୀକ୍ଷା ଓ ଦିବ୍ୟଜ୍ଞାନ ପ୍ରଦାନ କରିବା ହୁଅନ୍ତୁ ।

ପୁନଶ୍ଚ ଗୀତାର ବିଷାଦ ଯୋଗରେ ଅର୍ଜ୍ଜୁନ କହିଛନ୍ତି ଆଚାର୍ଯ୍ୟଗଣ ଏବଂ ଆତ୍ମୀୟ ସ୍ୱଜନଙ୍କୁ  ହତ୍ୟା କରିବା ମହାପାପ । ମୁଁ ଯଦି ସେମାନଙ୍କୁ ହତ୍ୟା କରିବି ତେବେ ସନାତନ କୂଳଧର୍ମ ଧ୍ୱଂସ ହେବ, ଅଧର୍ମାଚରଣ ବଢ଼ିଯିବ, କୂଳ ଲଳନାଗଣ ବିପଥଗାମୀ ହେବେ ।

ସଂପଦ ଯୋଗରେ ଏ ଯୁଗର ଅର୍ଜ୍ଜୁନ ନିଶ୍ଚୟ କହନ୍ତେ – ହେ ମୋର କୃଷ୍ଣବାବୁ ଓରଫ ଗୁରୁଦେବ – ମୋତେ ଏଭଳି ଦିବ୍ୟଜ୍ଞାନ ଦିଅନ୍ତୁ ଯେପରି ଜ୍ଞାତି କୁଟୁମ୍ବଙ୍କୁ ମୁଁ ଦେଖି ନଦେଖିଲା ପରି ଅନୁଭବ କରେ । ସେମାନଙ୍କୁ ଏଭଳି ସ୍ଲୋ ପଏଜନ୍ ଦେଇ ହତ୍ୟା କରେ ଯେପରି ମୁଁ ଆଦୌ ହତ୍ୟାକାରୀ ଭାବେ ଧରାନପଡ଼େ । କୁଳସ୍ତ୍ରୀମାନଙ୍କୁ ଅନାଥାଶ୍ରମ, ବିଧବାଶ୍ରମ, କନ୍ୟାଶ୍ରମ ଆଦି ପ୍ରତିଷ୍ଠା କରାଇବାରେ ସୁଯୋଗ ଦେଇ ସୁଶ୍ରୀ ତରୁଣୀମାନଙ୍କୁ ରୂପଜୀବୀରେ ପରିଣତ କରିବାରେ କର୍ମଶାଳା ଆୟୋଜନ କରେ । ବାଳାଶ୍ରମରୁ ବାଳକ ବାଳିକାମାନଙ୍କୁ ଗଲଫ୍ କଣ୍ଟ୍ରିକୁ ରପ୍ତାନୀ କରି ଅର୍ଥ ଉପାର୍ଜ୍ଜନର ବାଟ ଦେଖାଏ । ଏ ଯୁଗର ଟେଷ୍ଟଟ୍ୟୁବ୍ ବେବି ଏବଂ କ୍ଲୋନିଂ ବ୍ୟବସ୍ଥାରେ ଉଦ୍‌ଭାବନ ଯୋଗୁଁ ଗୀତାରେ ତଥାକଥିତ ବର୍ଣ୍ଣଶଙ୍କର କଥାଟା ଉପରେ ଗୁରୁତ୍ୱ ଆଉ ନାହିଁ । ତଥାପି ଏଇ ବାର୍ତ୍ତାଟି ଆମର ଲୋକସଂପର୍କ ବିଭାଗ ଦ୍ୱାରା ପରିପ୍ରଚାର ବ୍ୟବସ୍ଥା କରିବାକୁ ମୋତେ ଶକ୍ତି ଦିଅନ୍ତୁ ଗୁରୁଦେବ ଯେପରି ସେ ସୁରୁଖୁରୁରେ ଆମ କ୍ୟାବିନେଟ୍‌ରେ ସର୍ବସମ୍ମତ ନିଷ୍ପତ୍ତିଭାବେ ଗୃହୀତ ହେଉ ।

ବିଷାଦ ଯୋଗରେ ଅର୍ଜ୍ଜୁନ ଶ୍ରୀକୃଷ୍ଣଙ୍କୁ କହିଲେ – ବଂଶନାଶକାରୀ ନର୍କଗାମୀ ହେବେ, ପିତୃପୁରୁଷଗଣ ପିଣ୍ଡପାଣି ବର୍ଣ୍ଣଶଙ୍କରଙ୍କଠାରୁ ପାଇବେ ନାହିଁ । ଜାତି ଧର୍ମ କୁଳ ଧର୍ମ ଲୋପ ପାଇଯିବ ।

ସଂପଦ ଯୋଗରେ ଏ ଯୁଗର ଅର୍ଜ୍ଜୁନ ବାବୁ କହିବେ – ଧର୍ମ ନିରପେକ୍ଷ ରାଷ୍ଟ୍ରରେ ଜାତି ଧର୍ମ କୁଳ ଧର୍ମର ପ୍ରଶ୍ନ ନାହିଁ । ତେବେ ନିର୍ବାଚନ ବୈତରଣୀ ସଂତରଣ ନିମିତ୍ତ ସଂଖ୍ୟାଲଘୁ

ତୋଷଣ ସମେତ ସଂରକ୍ଷଣ ନିୟମ ବଳବତ୍ତର ରଖିବାର ପ୍ରୟାସ ଜାରି ରହିବ ।

ଶେଷରେ ବିଷାଦ ଯୋଗରେ ଅର୍ଜ୍ଜୁନ ଦୁଃଖାଭିଭୂତ ହୋଇ ଧନୁ ଓ ଶର ତ୍ୟାଗ କରି ରଥ ଉପରେ ଅଧିର ହୋଇ ବସିପଡିଲେ । ସଂପଦ ଯୋଗର ଏ ଯୁଗର ଅର୍ଜୁନ ସାର୍ କହିବେ – ଗୁରୁଦେବ ମୋ ନାମରେ ଯେତେ ଦୁର୍ନୀତି ଅଭିଯୋଗ ଆସୁ, ଯୌନ ଅପବାଦଠୁ ଆରମ୍ଭ କରି ସାଂସଦ କ୍ରୟ ଅପବାଦ ଯାଏ, ପୁନଶ୍ଚ ନିଶାକର ପତିଙ୍କଠୁ ଆରମ୍ଭ କରି ବାଳ ବ୍ରହ୍ମଚାରୀ ସମ୍ପର୍କିତ ଯେତେ କିମ୍ବଦନ୍ତୀ ସୃଷ୍ଟି ହେଉ କଷ୍ଟାର୍ଜିତ ସଭ୍ୟପଦ ରୂପରେ କବଚକୁ ମୁଁ କେବେହେଲେ ତ୍ୟାଗ କରିବାର ଦୁଃସାହସ ନକରେ !!

ପାଠକେ ସଂପଦ ଯୋଗ ଓ ବିଷାଦ ଯୋଗର ଏକ ତୁଳନାତ୍ମକ ଅଧ୍ୟାୟ ଆପଣଙ୍କ ପାଖେ ଉଲ୍ଲେଖ କରାଗଲା । ତ୍ରି ସନ୍ଧ୍ୟାରେ ଏହାକୁ ପାଠ କରି କିଛି ଉପକାର ପାଇଲେ କି ନା – ଉଦାର ହୃଦୟରେ ଜଣାଇବାକୁ ଅନୁରୋଧ । ମୋତେ ନୁହେଁ । ପ୍ରିୟ ସାଙ୍ଗଙ୍କୁ ।

□

# ଜଣେ ପୟୋମୁଖଂ ବିଷକୁମ୍ଭଂ ବନ୍ଧୁଙ୍କ ସମ୍ପର୍କରେ

ଜଣେ ବନ୍ଧୁ ଗ୍ରାମାଞ୍ଚଳରୁ ପତ୍ରିକାଟିଏ ବାହାର କରୁଛନ୍ତି । ଥରେ ତାଙ୍କ ସହ ମୋର ସାକ୍ଷାତ ହେଲା ଆକସ୍ମିକ ଭାବରେ । ମୁଁ ମଧ୍ୟ ଗ୍ରାମାଞ୍ଚଳରୁ (ପୁଣି ପଲ୍ଲୀଜୀବନ ଆଧାରିତ) ପତ୍ରିକାଟିଏ ପ୍ରକାଶ କରୁଛି । ଏଣୁ ପରସ୍ପର ପରସ୍ପରକୁ ଭେଟି ଆନନ୍ଦିତ ହେବା ସ୍ୱଭାବିକ୍ । ବହୁଦିନ ପରେ ଦୁଇବନ୍ଧୁଙ୍କ ଭିତରେ ଦେଖାସାକ୍ଷାତ ହେବାରୁ ପ୍ରଥମେ ଦୁଃଖ ସୁଖ କରିବାର କଥା । ପରେ ପରେ ପତ୍ରିକା ସମ୍ବନ୍ଧରେ ଆଲୋଚନା ହେଲା । ସେ ତାଙ୍କ ପତ୍ରିକାର ପ୍ରସାରଣ ସମସ୍ୟା, ଆର୍ଥିକ ଦୁଃସ୍ଥିତି ଯୋଗୁଁ ପତ୍ରିକାଟିକୁ ନିୟମିତ କରି ନପାରିବାର ଦୁଃଖ ମୋତେ ଜଣାଇଲେ । ମୁଁ ମଧ୍ୟ ମୋ ପତ୍ରିକା ବିଷୟରେ ତାଙ୍କୁ ଜଣାଇଲି । ଆର୍ଥିକ କ୍ଷତି ସତ୍ତ୍ୱେ ପତ୍ରିକାଟି ନିୟମିତ ଭାବରେ ତିନିବର୍ଷ ଧରି ଚଳାଇ ଆସୁଥିବାରୁ ତାଙ୍କୁ ଧନ୍ୟବାଦ ମଧ୍ୟ ଜଣାଇଲି । ହେଲେ ପାଠକୀୟ ପ୍ରତିକ୍ରୀୟା ନେଇ ଉଭୟେ ଆମେ ଏକମତ ହେଲୁ ।

ମୁଁ ଗୋଟିଏ ସୁନ୍ଦର ଉଦାହରଣ ତାଙ୍କୁ ଦେଲି । ମୁଁ ଅତୀତର ଗୋଟିଏ ହାଇସ୍କୁଲରେ ଶିକ୍ଷକତା କରୁଥିଲି । ସେଇ ହାଇସ୍କୁଲକୁ ଦିନେ ପତ୍ରିକାଟିର ଗ୍ରାହକ ହେବାପାଇଁ ବିଦ୍ୟାଳୟର

ପ୍ରଧାନ ଶିକ୍ଷକଙ୍କୁ ଅନୁରୋଧ ଜଣାଇଲି । ପ୍ରଧାନ ଶିକ୍ଷକଙ୍କୁ ଖଣ୍ଡିଏ ପତ୍ରିକା ଉପହାର ଦେଲି ଏବଂ ଆଉ କେତେଖଣ୍ଡ କପି ପିଲାମାନଙ୍କୁ ଯତ୍‌କିଞ୍ଚିତ୍ ମୂଲ୍ୟ ବିନିମୟରେ ବିତରଣ ପାଇଁ ଅନୁରୋଧ କରିଆସିଲି । ପ୍ରାୟ ମାସକ ପରେ ପ୍ରଧାନ ଶିକ୍ଷକ ମହାଶୟ ତାଙ୍କର ଜଣେ ସହକର୍ମୀଙ୍କ ହସ୍ତରେ ପତ୍ରିକା ଗୁଡିକ ଫେରାଇ ଦେଲେ । କହିଲେ ଏ ପତ୍ରିକାର କୌଣସି ଉପାଦେୟ ଜିନିଷ ନାହିଁ । ଏଣୁ ଏହାକୁ ପିଲାମାନଙ୍କୁ ଦେବାର କୌଣସି ଆବଶ୍ୟକତା ନାହିଁ । ମୁଁ ଯାଇ ସେ ପ୍ରଧାନ ଶିକ୍ଷକଙ୍କୁ ସାକ୍ଷାତ କଲି । କେଉଁ କେଉଁ କାରଣରୁ ଏ ପତ୍ରିକା ମୂଲ୍ୟହୀନ ମତ ଦେବାକୁ ଅନୁରୋଧ କଲି । ସେ ମହାଶୟ କିନ୍ତୁ ମୁଣ୍ଡପୋତି ବସିରହିଲେ । ଏକ ଧାରଣା ନେଇଆସିଲି ଯେ, ସେ ପ୍ରଧାନ ଶିକ୍ଷକ ମହାଶୟଙ୍କୁ ଦେଇଥିବା ଉପହାର କପିଟିକୁ ନିଜେ ପଢ଼ିନାହାନ୍ତି ଏବଂ ଛାତ୍ରଛାତ୍ରୀମାନଙ୍କୁ ପତ୍ରିକା ଆଦୌ ବିତରଣ କରିନାହାନ୍ତି । ଆମର ଉଚ୍ଚଶିକ୍ଷିତ ବ୍ୟକ୍ତିମାନଙ୍କର ଯଦି ଓଡ଼ିଆ ପତ୍ରପତ୍ରିକା ପ୍ରତି ଏକପ୍ରକାର ମନୋଭାବ ତାହାଲେ ଅନ୍ୟମାନଙ୍କ କଥା ଆମେ କଣ କହିବା ?

ମୋ କଥା ଶୁଣି ବନ୍ଧୁଜଣକ ତାଙ୍କ ପ୍ରତିକ୍ରୀୟା ପ୍ରକାଶ କଲେ ତାଙ୍କ ନିଜର ଏକ ଅଭିଜ୍ଞତାରୁ । ଜଣେ ବନ୍ଧୁ ତାଙ୍କ ପତ୍ରିକାର ଖୁବ୍ ପ୍ରଶଂସା କଲେ । ତାଙ୍କୁ କେତୋଟି କପିମଧ୍ୟ ଦେଇଗଲେ ଗ୍ରାହାକ କରିବାପାଇଁ । ଫୋନ୍ କରି କରି ଚିଠି ଦେଇ ଦେଇ କିଛି ଲାଭ ହେଲାନାହିଁ । କୌଣସି ଏକ ସାହିତ୍ୟ ସଭାରେ ସେହି ବନ୍ଧୁଙ୍କ ସହ ହଠାତ୍ ଦେଖା ହୋଇଗଲା । ସେ କହିଲେ ମୁଁ ଗ୍ରାହକ ଦେୟ ବାବଦ ତିନିଜଣଙ୍କର ଏକଶତ କୋଡିଏ ଟଙ୍କା ଗୋଟିଏ ଲଫାପାରେ ଭର୍ତ୍ତିକରି ପଠାଇଛି । ତୁମେ ଦିନେ ଦୁଇଦିନ ଭିତରେ ପାଇଯିବ । ସମ୍ପାଦକ ବନ୍ଧୁଜଣଙ୍କ ଘରକୁ ଫେରିଲେ ଏବେଯାଏ ସେ ଲଫାପାଟି ତାଙ୍କପାଖରେ ପହଞ୍ଚି ପାରିଲା ନାହିଁ । ବନ୍ଧୁ ଯେଉଁ ଫୋନ୍ ନମ୍ବର ଦେଇଥିଲେ ସେ ନମ୍ବରରେ ବି ସେ ଆଉ ମିଳୁନାହାନ୍ତି ।

ଏଣୁ ପାଠକେ ବିଚାର କରନ୍ତୁ ଏହିଭଳି ପ୍ରୋତ୍ସାହନ ମିଳିଲେ ଓଡ଼ିଆ ପତ୍ରପତ୍ରିକାର ଭାଗ୍ୟ କିପରି ବଢ଼ିବ ? ଖାଲି ମିଠାକଥା କହି ପେଟରେ ଗୁଡ଼ାଏ ଛଳନା ବିଷ ପୁରାଇ ଲାଭକଣ ? ବନ୍ଧୁ ଜଣଙ୍କ ଯଦି ନିଜର ଅକ୍ଷମତା ଜଣାଇ ଗ୍ରାହକ ନ ହୋଇଥାନ୍ତେ କିମ୍ବାମୋର ପ୍ରଧାନ ଶିକ୍ଷକ ବନ୍ଧୁ ଯଦି ସିଧାସଳଖ ପତ୍ରିକା ରଖିବା ଅବସ୍ଥାରେ ନାହାନ୍ତି ବୋଲି କହିଥାନ୍ତେ ବରଂ ସବୁଠାରୁ ଭଲ ହୋଇଥାନ୍ତା । ଏହି ପୟୋମୁଖଂ ବିଷକୁମ୍ଭଂ ହେବାର ଅର୍ଥ କିଛି ନାହିଁ । ନାଁ କଣ କହୁଛନ୍ତି ଆଜ୍ଞା !

ଆମେ ପାନ ବିଡ଼ି ସିଗାରେଟ୍ ଖାଇ ଧୂଆଁରେ ପଇସା ଉଡାଇ ରୋଗ କିଣିବା ପଛେ କିନ୍ତୁ ପଇସାଟେ ପତ୍ରିକା ପୁସ୍ତକ କିଣିବାରେ ଖର୍ଚ୍ଚ କରିବାନାହିଁ । ଏଇ ପ୍ରତିଜ୍ଞା କରିବା ବରଂ ଭଲ । ଏହାଦ୍ୱାରା ସମ୍ପାଦକ ମାନେ ଆଖିକାନ ବୁଜି ଘରେ ବସନ୍ତେ ଏମିତି ହଇରାଣ ହୁଅନ୍ତେ ନାହିଁ ।

# ବାଳିକା–ବାଳିକା–ବାଳିକା

ଆଗ କାଳରେ ଗୃହିଣୀମାନେ ସକାଳେ ସଂଜେ ଭଗବାନଙ୍କୁ ଡାକି ସ୍ୱାମୀ ପୁତ୍ରର ମଙ୍ଗଳ ମନାସୁଥିଲେ । ଚଉଁରାମୂଳେ ସଂଜବତୀ ଦେଇ ବୃନ୍ଦାବତୀଙ୍କୁ ବର ମାଗୁଥିଲେ ନିଜ କାଚ ସିନ୍ଦୁର ବଜ୍ର ହେବାକୁ । ଏବେ ଯୁଗ ବଦଳିଛି । ନାରୀ ନିର୍ଯ୍ୟାତନା କଥା ଖବର କାଗଜରେ ବହୁତ ବାହାରିଲେ ବି ନାରୀ ଭୟଭୀତ ନହୋଇ ଲକ୍ଷ୍ୟପଥରେ ଆଗେଇ ଚାଲିଛନ୍ତି ।

ତେବେ କିଛି ଯୁବତୀ ଏବେ ଆଲବମ୍ ନିଶାରେ ମସଗୁଲ, ଏମାନଙ୍କ ଚେହେରାକୁ ଆଖିଆଗରେ କିଛି ପ୍ରେମବାଉଳା ଗୀତିକାର ମଧ୍ୟ ରାତାରାତି ଫେମସ୍ ହେବା ପାଇଁ ଶସ୍ତା ପ୍ରେମ ମୂଳକ ଗୀତ ଲେଖି ଚାଲିଛନ୍ତି । ଏବେ ଗୋଟିଏ ଗୀତ ବିଚାରକୁ ନିଆଯାଉ ବାଳକ–ବାଳକୌ–ବାଳକାଃ । ସଂସ୍କୃତ ଶିକ୍ଷକ ଯେତେବେଳେ ଉଚ୍ଚରଣ କରୁଛନ୍ତି ବାଳକ–ବାଳକୌ–ବାଳକାଃ ଶ୍ରେଣୀରେ ଝିଅମାନେ ପଣ୍ଡିତଙ୍କର କୌଣସି କଥା ନଶୁଣି କହୁଛନ୍ତି ବାଳିକା–ବାଳିକା–ବାଳିକା । ପରେ ପରେ ଶ୍ରେଣୀ କୋଠରୀ ଛାଡ଼ି ଦେଇ ଛାତ୍ରୀମାନେ ବାହାରକୁ ଚାଲିଆସି ନାରୀ ଜାଗରଣର ଡିଣ୍ଡିମ ପିଟୁଛନ୍ତି ।

ଏଇଠି ପ୍ରଶ୍ନଉଠେ ଛାତ୍ରୀମାନେ ପ୍ରଥମରୁ ନିଜର ଗୁରୁଙ୍କୁ ଅବମାନନା କରି ଶ୍ରେଣୀ କୋଠରୀ ଛାଡ଼ି ଦେଇ କଣ ଠିକ୍ କଲେ । ପଣ୍ଡିତ ବିଚରା ଅପମାନିତ ହୋଇ ମ୍ରିୟମାଣ ଭାବେ ଠିଆ ହେବାର ଦୃଶ୍ୟ ଦେଖିଲେ ଛାତ୍ରୀମାନେ ଯେ ଠିକ୍ କରିନାହାନ୍ତି ଏକଥା ସାଧାରଣ ଦର୍ଶକେ ବୁଝିପାରିବେ । ଏଣୁ କ୍ୟାସେଟ୍ କମ୍ପାନୀ ମାନେ ଟିକେ ସାମାଜିକ ପ୍ରତିବଦ୍ଧତା ଦିଗକୁ ଦେଖନ୍ତୁ । ତାଙ୍କର ଦୃଶ୍ୟ ଉତ୍ତୋଳନ ନିଛକ ମନୋରଂଜନ ହେଲେ ଚଳିବ କିନ୍ତୁ କ୍ଷତିକାରକ ଶସ୍ତା ମନୋରଂଜନ ହେଲେ ଆଗାମୀ ବଂଶଧର କ୍ଷମା ଦେବେନି । ନାରୀ ଜାଗରଣ ହେଉ ମନା ନାହିଁ କିନ୍ତୁ ସାମାଜିକ ରୀତି ନୀତି ମଧ୍ୟରେ ଏହା ସୀମିତ ରହୁ ।

●

# କାଞ୍ଜି : ଝାଞ୍ଜି : ପାଞ୍ଜି

**କା**ଞ୍ଜି କଥା କହିଲା ବେଳକୁ ଆମ ଆଖିଆଗରେ ନାଚିଯାଏ ଢଳଢଳ ଫିକା ହଳଦିଆ ଖଟାପାଣି ଭିତରେ ପୋଇଖଡ଼ି, ଖଣ୍ଡି ଖଣ୍ଡିଆ ଲାଉ କିମ୍ବା ଆଉ କିଛି ପରିବା ମିଶ୍ରଣ । ପୁଷମାସିଆ କାଞ୍ଜିଟା ଦେହକୁ ଭାରୀ ହିତ, ଏପରିକି ମୁଣ୍ଡକୁ ପିତ ଚଢ଼ିଗଲେ, ମଣିଷର ପାଗଳାମି ବାହାରିଲେ ଏହି କାଞ୍ଜିଟା ଭାରି ଦରକାରୀ ବୋଲି ବୈଦ୍ୟରାଜ ଅଶ୍ୱିନୀକୁମାର ଦେବତାମାନଙ୍କୁ କହିଥିବାର ଆମ ମର୍ତ୍ତ୍ୟର କବିରାଜ ଭାଇମାନେ କହିଥାନ୍ତି । ଏହି କାଞ୍ଜି ଉପରେ ଗୀତଟାଏ ପାଲା ଗାହାଣ ବାହୁ ଉଞ୍ଚେଇ, କାନରେ କୁଣ୍ଡଳ ହଲେଇ । ଗୀତଟି ହେଲା – ଏଣୁ କାଞ୍ଜି ଗଲା ଖରେ, ଯାଇ ପହଞ୍ଚିଲା ଅମୁକ ଘରେ । ଏଣୁ ଅମୁକ ତେଣୁ ସମୁକ, କାଞ୍ଜିକୁ ଦେଲେ ପିଟା ଅନେକ । ଏବେ ଜାତିର ନାଁ ଧରିଲେ ବିପଦ ଅଛି ଏଣୁ ଆମେ ଗୀତଟାକୁ ବଦଳାଇ ଗାଇଦେଲୁ । ପାଠକେ କ୍ଷମା କରିବେ ।

ଏଇ କାଞ୍ଜି ସହ ଝାଞ୍ଜିର ସମ୍ପର୍କ ଅଛି କି ନା ଆମେ କହିପାରୁନୁ । ତେବେ ଏଇ କାଞ୍ଜି ପାଇଁ ଯେଉଁ ବାସି ତୋରାଣିର ଆବଶ୍ୟକତା ଅଛି ତା'ର ଝାଞ୍ଜି ବେଳେ ବେଶ୍ ଦରକାର । କାରଣ ଝାଞ୍ଜି ବହିଲେ ଖରାଟାଣ ହେଲେ ଘରୁ ବାହାରିବା ଆଗରୁ ପେଟେ ବାସି ତୋରାଣି ପିଇ ଦେଇ ଚାଲନ୍ତୁନା, ଆଉ ଅଂଶୁଘାତର ଭୟ ରହିବ ନାହିଁ । କେହି କେହି ଏଇ କାଞ୍ଜିର ବାଞ୍ଜି ସହ ସଂପର୍କ ଥିବାର କହନ୍ତି । ଅର୍ଥାତ୍ ନିୟମିତ କାଞ୍ଜି ପିଉଥିବା ଘରଣୀଟି ବେଶ ସୁସ୍ଥ ସବଳ ରହେ, ତା ମରଦ ବି ବଳୁଆ । ଏଣୁ ବାଂଝି ହେବାର ଚାନ୍ସ ଖୁବ୍ କମ । ଫଳରେ ସମାଜରେ ତାର ବଦନାମର ଝାନ୍‌ଜି ବହେନା– ଅପବାଦର ଡକା ବାଜେନା । ଏଣୁ କାଞ୍ଜି ସହ ଏହି ସୂତ୍ରରେ ବାଂଝି ସହ ସମ୍ପର୍କ ଥିବାର ଅନୁମାନ କରୁ ।

ଏବେ ଆସନ୍ତୁ ଯିବା ପାଞ୍ଜି ପାଖକୁ । ତେବେ ଏଇ କାଞ୍ଜି ଝାନ୍‌ଜି, ବାନ୍‌ଝି ସାଙ୍ଗକୁ ପାଞ୍ଜିର କିଛି ସଂପର୍କ ଥିବା ଭଳି ଆମେ ଭାବି ପାରୁନୁ । ଖାଲି ଟିକେ ପଦ ପଡିବା ପାଇ ଯତିପାତ ହେବା ଭଳି ବ୍ୟବସ୍ଥା ଥିବା ଭଳି ମନେହୁଏ । ଠିକ୍ ଯେମିତି ଆଜିକାଲି ଅନେକ ଗୀତ ଆଉ କବିତାରେ ଅର୍ଥ ପ୍ରକାଶ ପାଇବ ବୋଲି ପୂର୍ବ ଧାଡ଼ିର ସମ୍ବନ୍ଧ ଥାଉ ନଥାଉ ଶବ୍ଦ ଯୋଜନା କରି ଦିଆଯାଉଛି କେବଳ ଭଲ ଶୁଭିବା ପାଇଁ କିମ୍ବା ଭଲ ଗାଇବାର ସୁବିଧା ହେବା ପାଇଁ । ଏଇ ଯେମିତି ଗୀତଟିଏ ଆରେ ଶୁଖା ଖଡ଼ଖଡ଼, ମିଛ ମାୟାରେ ହେଉଛୁ ନଡ଼ବଡ଼ । ତୋତେ ଧରୁ ଧରୁ ହେଇ ପଡ଼ପଡ଼ । ସଦାବେଳେ ହେଉ ଭଡ଼ ଭଡ଼ । ଇଯେ ପୁଣି ସୁନ୍ଦର ରିମିକ୍ସ ଗୀତର ମାନ୍ୟତା ପାଇବ ନିଶ୍ଚୟ ।

# ମୁଁ ସଭାପତି ହେବି

ଦେଖନ୍ତୁ ! ମୁଁ ସଭାପତି ହେବାକୁ ଠିକ୍ କରି ନେଇଛି । ଏଣୁ ଯେନତେନ ପ୍ରକାରେଣ ମୋତେ ଅନୁଷ୍ଠାନର ସଭାପତି ପଦ ଅଳଂକୃତ କରିବାକୁ ପଡ଼ିବ । ମୁଁ ଜାଣେ ସଭାପତି ହେବା ପାଇଁ ଏବେ ଅନୁଷ୍ଠାନର ଅଭାବ ନାହିଁ । ସହରର ଗଳି କନ୍ଦିଠାରୁ ଆରମ୍ଭ କରି ଗାଆଁର ମନ୍ଦିର ମଠାଯାଏ ସବୁଠି ବିଭିନ୍ନ ସଂଗଠନ ଭରପୁର । ଏଇ ସଂଗଠନ ଭିତରୁ କେତେକ ସାରସ୍ୱତ ସଂଗଠନ ତ କେତେକ ସାମାଜିକ କେତେକ ସାଂସ୍କୃତିକ କେତେକ ରାଜନୈତିକ । ଏଣୁ ଯେ କୌଣସି ଗୋଟେ ସଂଗଠନର ସଭାପତି ପଦଟିରେ ମୁଁ ନିଜକୁ ଅଳଂକୃତ କରିବି । ମୋ ପାଖରେ ସେ ପଦଟି ହାସଲ କରିବା ପାଇଁ ସମସ୍ତ ଯୋଗ୍ୟତା ରହିଛି । ମୋର ବୟସ ବେଶ୍ ଅଧିକ । ଅର୍ଥାତ୍ ସଂଗଠନରେ ଅନ୍ୟାନ୍ୟ ସଭ୍ୟସଭ୍ୟାଙ୍କ ଠାରୁ ମୁଁ ବୟସ୍କ । ଶିକ୍ଷାଗତ ଯୋଗ୍ୟତା ମଧ୍ୟ ମୋର ଅଛି । ରାଜନୈତିକ ବ୍ୟକ୍ତିଙ୍କ ସହ ମୋର ସମ୍ପର୍କ ମଧ୍ୟ ମନ୍ଦନାହିଁ । ଅଳ୍ପେ ବହୁତେ ଗୋଟିଏ କଥାକୁ ନେଇ ବନେଇ ଚୁନେଇ ବେଶ କିଛି ସମୟ କହିପାରେ । ଏହାଛଡ଼ା ସବୁଠୁ ବଡ଼କଥା ହେଲା ସଭ୍ୟସଭ୍ୟାଙ୍କୁ ମଝିରେ ମଝିରେ ଚାହା ଜଳପାନି ଯୋଗାଇ ଦେବାପାଇଁ ମୁଁ କୁଣ୍ଠିତ ହେବିନାହିଁ ।

ବେଳେବେଳେ ପିକ୍‌ନିକ୍ କରିବା ଆଳରେ ରୋଜଗାର ବ୍ୟବସ୍ଥା କରିବି । ତେବେ ଆପଣମାନେ ପଚାରିପାରନ୍ତି ମୁଁ ସଭାପତି ହେବାକୁ କାହିଁକି ଏତେ ଲାଳାୟିତ । ଦେଖନ୍ତୁ ସଭାପତିଙ୍କର ସଭାରେ ବକ୍ତବ୍ୟ ବିଶେଷ କିଛି ନଥାଏ । ସେ କେବଳ ସଭାର କେନ୍ଦ୍ର ସ୍ଥାନରେ ବସି ସଭାକୁ ନିୟନ୍ତ୍ରଣ କରେ । ବେଳେବେଳେ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତି ସଭାକୁ ମୁଖ୍ୟ ଅତିଥି କି ବକ୍ତା ହୋଇ ଆସିଲେ ସଭାପତି ଜଣଙ୍କ ଗେଞ୍ଜିହୋଇ କୋଣ ଠେସା ଭାବରେ ମଞ୍ଚର ଶେଷ ଧାଡ଼ିରେ ବି ବସିପାରେ । ତଥାପି ଏତେ ବଡ଼ ଲୋକଙ୍କ ଦେହକୁ ଦେହ ଟିକେ ଲାଗିଗଲେ ମନାଟା କୁଲୁକୁଲୁ ହୁଏ ଛାତିଟା ବି ଫୁଲ୍ ସ୍ପିଡ୍‌ରେ ଧଡ଼କନ୍ ତୋଳେ ।

ସବୁଠୁ ବଡ଼କଥା ହେଲା ସାମ୍ବାଦିକମାନେ ଅନ୍ୟ କାହା ନାଆଁକୁ ଛାଡ଼ିଦେଇ ପାରନ୍ତି ସଭାପତିଙ୍କ ନାଆଁଟାକୁ ବାଦ୍‌ଦେଇ ପାରିବେନି । ଏଣୁ ଖବର କାଗଜରେ ନାଆଁଟା ତ ବାହାରିବ । ଏଇସବୁ କଥାକୁ ବିଚାରକୁ ନେଇ ମୁଁ ସ୍ଥିର ସିଦ୍ଧାନ୍ତ ନେଇଛି ସଭାପତି ହେବି । ଗୋଟେ ସଂଗଠନରୁ ଯଦି ତଡ଼ାଖାଏ ତେବେ ନିଜର ଭାଇବନ୍ଧୁ କୁଟୁମ୍ବକୁ ନେଇ ସଂଗଠନଟିଏ ଗଢ଼ି ତହିଁରେ ନିଶ୍ଚୟ ନିଶ୍ଚୟ ନିଶ୍ଚୟ ସଭାପତି ହେବି ।

# ଆଜ୍ଞା ! କୋଉଠି ଖୋଲିବି

ଆଜ୍ଞା ପାଠ ଶାଠ ପଢ଼ିଲି, ଲ ଗ୍ରାଜୁଏଟ୍ ହେଲି । ପ୍ରାକ୍ଟିସ୍ କରିବା ପାଇଁ ଜୁନିୟର ହେଲି ପାଞ୍ଚବର୍ଷ । ହେଲେ ଖଡ଼ା ପୁଳେ କିଣିବା ପାଇଁ ମଧ୍ୟ ପାଖକୁ ପଇସା ଆସିଲାନାହିଁ । ସେ ଧନ୍ଦା ଛାଡ଼ି ଧାଁ ଧଉଡ଼ କଲି ନେତାଙ୍କ ପଛରେ । ସୌଭାଗ୍ୟକୁ ନେତା ଜଣଙ୍କ ନିର୍ବାଚନ ଜିତିଲେ । ତାଙ୍କରି କରୁଣାରୁ ମଦଦୋକାନଟିଏ ଖୋଲିବା ପାଇଁ ଲାଇସେନ୍ସ ପାଇଲି । ହେଲେ ଆଜ୍ଞା କୋଉଠି ଖୋଲିବି ?

ଆମ ଗାଁ ସ୍କୁଲପାଖରେ ବଖରେ ଘର ମିଳୁଥିଲା । ସେଠି ସାର୍‌ମାନେ ରହନ୍ତି, ତାସ ଖେଳ ଜମେ । ଭାବୁଥିଲି ଏଇଠି ଦୋକାନଟିଏ ଖୋଲିଲେ ଭଲ ଚାଲିବ । କିନ୍ତୁ ମୋ ନେତାଙ୍କ ବିରୋଧିମାନେ ଏଠାକାର ଛାତ୍ରଙ୍କୁ ମତେଇ ଦୋକାନ ଖୋଲେଇ ଦେଉନାହାନ୍ତି ।

ପୁଣି ଭାବିଲି ମନ୍ଦିର ପାଖରେ ଯେଉ ଘର ଅଛି, ସେଥିରେ ବର୍ଷକରେ ଥରେ ଦି' ଥର କୀର୍ତ୍ତନ ହେବାବେଳେ ଅରୁଆ ଭାତ ଡାଲମା ରନ୍ଧାଯାଏ । ମନ୍ଦିରରେ ଟ୍ରଷ୍ଟବୋର୍ଡ ମେମ୍ବରଙ୍କୁ ପଟେଇ ସେଇଠି ଦୋକାନଟି ଖୋଲିବାକୁ ଯାଉଛି । ସେଠି ବିରୋଧିଦଳଙ୍କ ବିରୁଦ୍ଧରେ ଖୋଲି ହେଲାନାହିଁ ! ଏଠି କାଳେ ମଦଦୋକାନ ଖୋଲିଲେ ଠାକୁରଙ୍କ ଭକ୍ତମାନଙ୍କର ମତିଭ୍ରମ ହେବ । ଭକ୍ତମାନେ ଗଞ୍ଜେଇ ଖାଇ ଖୋଳ କରତାଳ ପିଟିପିଟି ଭାଙ୍ଗି ଦେଇଥିବା କଥା ଆଖିରେ ପଡୁନି !

ଥାନା ପାଖରେ, ଡାକ୍ତରଖାନା ପାଖରେ ଏପରିକି ଛକଜାଗା ଦେଖି ଯେଉଁଠି ମଦ ଦୋକାନ ଖୋଲିବା ପାଇଁ ଚାହିଁଲି ବିରୁଦ୍ଧ ଆସୁଛି ।

ମୋ ବୋଉ ତ ମହିଳା ସମିତି ପ୍ରେସିଡେଣ୍ଟ । ଏଣୁ ତାଙ୍କୁ କହିଲି ବୋଉ ତୋ ଅଫିସ୍‌ର ତ ଦୁଇ ବଖରା ଘର । ମୋତେ ବଖରେ ଦେ ! ସେ କହିଲା ନାଇଁରେ ପୁଅ । ମୁଁ ପରା ଏବେ ମଦ ବିରୋଧୀ ଆନ୍ଦୋଳନରେ ନେତୃତ୍ୱ ନେଇଛି । ତୋତେ ଘର ଦେଲେ ମୋର ବଦନାମ୍ ହେବ ।

ଏବେ କୁହନ୍ତୁ ଆଜ୍ଞା ମୁଁ କଣ କରିବି ! କୋଉଠି ଖୋଲିବି । କଣ କହିଲେ ଆଜ୍ଞା – ସେଇ ଗୃହ ସାମନାରେ ଖୋଲିବି ! ହଁ, ଏଇ ଗୃହର ଲୋକେ ତ ଏବେ ରାଜ୍ୟକୁ ଆର୍ଥିକ ସଙ୍କଟରୁ ରକ୍ଷା କରିବା ପାଇଁ ଅଧିକରୁ ଅଧିକ ମଦଦୋକାନ ଖୋଲିବା ପାଇଁ ଲାଇସେନ୍ସ ଦେବାକୁ ନିଷ୍ପତ୍ତି ନେଇଛନ୍ତି । ସେଇ ନିଷ୍ପତ୍ତି ବଳରୁ ମୋତେ ତ ଲାଇସେନ୍ସ ମିଳିଛି ।

ଏଣୁ ନିଷ୍ପତ୍ତି ନେଇଥିବା ଗୃହ ପାଖରେ ମଦ ଦୋକାନ ଖୋଲିବି ! ଖୋଲିବି ! ଅନୁମତି ମିଳିବା ଯାଏ ଅନଶନ କରିବି ।

□

# ଆତ୍ମଜୀବନୀ ଲେଖା ବିପକ୍ଷରେ

ଆଜ୍ଞା ମୋତେ ମୋର ଆତ୍ମଜୀବନୀ ଲେଖିବା ପାଇଁ ଅନେକ ବନ୍ଧୁ ପରାମର୍ଶ ଦେଉଛନ୍ତି । କିଏ ଚିଠିରେ ଲେଖୁଛି – ସାର ଏଇଟା ଆପଣଙ୍କ ଆତ୍ମଜୀବନୀ ଲେଖିବାର ପ୍ରକୃଷ୍ଟ ସମୟ । କେଉଁ ପ୍ରକାଶକ ବନ୍ଧୁ ପରାମର୍ଶ ଦେଉଛନ୍ତି ଆଜ୍ଞା ! ଆତ୍ମଜୀବନୀ ଲେଖା ଆରମ୍ଭ କରିଦିଅନ୍ତୁ ପ୍ରକାଶନ ପାଇଁ ଆଦୌ ଚିନ୍ତା କରିବେନି । ମୁଁ ପ୍ରକାଶ କରିବି । କିନ୍ତୁ ତା ଆଗରୁ ଆପଣ ଆପଣଙ୍କ ବିଭିନ୍ନ ପ୍ରତିନିଧି ସ୍ଥାନୀୟ ରଚନାକୁ ନେଇ ଗ୍ରନ୍ଥାବଳୀଟିଏ ପ୍ରକାଶ କରନ୍ତୁ । ଅତୀତରେ ବାନ୍ଧବୀ ଆଉ ପ୍ରେମିକାମାନେ କିନ୍ତୁ ଆତ୍ମଜୀବନୀ ଲେଖିବା କଥା ଉଠିଲେ ମୁହଁ ଛିଞ୍ଚାଡୁଛନ୍ତି । ସେମାନେ ଏବେତ ଆଉ ଯୁବତୀ ନୁହନ୍ତି । ପ୍ରୌଢ଼ା ବା ବୃଦ୍ଧା । କିନ୍ତୁ ସ୍ୱାମୀ ସନ୍ତାନ ନେଇ ସେମାନଙ୍କ ସୁଖର ସଂସାରରେ କାଳେ ନିଆଁ ଲାଗିଯିବ । ତେଣୁ ସେମାନେ ଏଇ ଆତ୍ମଜୀବନୀ ଲେଖା ବିପକ୍ଷରେ । ମୁଁ ସେମାନଙ୍କୁ ବୁଝାଏ – ଦେଖ ଆଇନ୍‌ଷ୍ଟାଇନ୍‌ଙ୍କ ଭଳି ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଉ ବର୍ଟାର୍ଣ୍ଡ ରସେଲଙ୍କ ପରି ବିଶ୍ୱପ୍ରସିଦ୍ଧ ଦାର୍ଶନିକଙ୍କ ଜୀବନରେ ମଧ୍ୟ କମ୍ ପ୍ରେମିକା ଆଉ ବାନ୍ଧବୀ ଜୁଟିନଥିଲେ । ସେମାନେ ଯଦି ଆତ୍ମଜୀବନୀ ଲେଖିନଥାନ୍ତେ ! ସେମାନଙ୍କ ଜୀବନରେ ଏ ବ୍ୟାପକ ତଥ୍ୟ କଣ ଜଣାପଡ଼ି ଥାଆନ୍ତା ?

ଜଣେ ବିଦୁଷୀ ପ୍ରେମିକାଙ୍କ ଯୁକ୍ତି – ଦେଖ ତୁମେ ଆଇନ୍‌ଷ୍ଟାଇନ୍ ହୋଇପାରିବ ନାହିଁ କି ରସେଲ ହୋଇପାରିବ ନାହିଁ । ଏଣୁ ତୁମ ଆତ୍ମଜୀବନୀକୁ ପଢ଼ିବ କିଏ ଯେ । ତୁମେ ଗ୍ରନ୍ଥାବଳୀ ଛପାଇଲେ ଗ୍ରନ୍ଥାବଳୀ ଗୁଡ଼ିକ ହୁଏତ ତିନିଶହ କପି ରାମମୋହନ ପାଠାଗାର ଯୋଜନାରେ ବିଭିନ୍ନ ପାଠାଗାରକୁ ଯିବ । ହେଲେ ସେସବୁ ପାଠାଗାର ଆଲମାରୀ ଥାକରେ ରହି ରହି ଉଈ ଖାଇବା କିମ୍ବା ରୁଖିଆ ଖାଇବ । କିନ୍ତୁ କେହି ତାକୁ ପଢ଼ିବେନି । ଓଲଟି ମୋତେ ପ୍ରଶ୍ନ କରନ୍ତି – ତୁମେ ଏଯାବତ୍ ରାଧାନାଥ, ନନ୍ଦକିଶୋର, ଫକୀରମୋହନ, ମେହେର, ମାୟାଧର ମାନସିଂଙ୍କ ଗ୍ରନ୍ଥାବଳୀରୁ ପୃଷ୍ଠାଟାଏ ଓଲଟାଇ ଥିବାପରି ମୋର ମନେ ହୁଏନା ! ତୁମେ କେଉଁ ଲେଖକଟାଏ ଯେ ତୁମ ଗ୍ରନ୍ଥାବଳୀକୁ ଲୋକମାନେ ପଢ଼ିବେ ।

ମୁଁ ଯଦି କହେ – ଦେଖ ମୋ ଗ୍ରନ୍ଥାବଳୀ କେହି ନ ପଢ଼ିଲେ ତୁମେତ ପଢ଼ିବ । ସେ ମୁହଁ ଛିଞ୍ଚାଡ଼ି କହନ୍ତି ! ମୁଁ ତ ତୁମକୁ ପଢ଼ି ପଢ଼ି ଥକିଛି । ଆଉ ତୁମ ଆତ୍ମଜୀବନୀକୁ ପଢ଼ି କଣ ଅଧିକା ଜାଣିବି ଯେ । ହଁ ମାନୁଛି କିଛି ଲୋକ ତୁମ ଆତ୍ମକଥା ପଢ଼ିଲେ

ସମୟାନୁବର୍ତ୍ତିତା, ଚାକିରୀ ଜୀବନରେ ସାଧୁତା, ଶିକ୍ଷାର ମୂଲ୍ୟବୋଧର ଅବକ୍ଷୟ ବିପକ୍ଷରେ ତୁମରି ବିରକ୍ତି ସମ୍ବନ୍ଧରେ ଅବଗତ ହେବେ । ହେଲେ ଏଥିରେ ସମାଜର କି ଉପକାର ହେବ ଯେ । ବୈଦିକ ଯୁଗରୁ ଆଜିଯାଏ ଏଇ ସାଧୁତା, ମୂଲ୍ୟବୋଧ, ସମୟାନୁବର୍ତ୍ତିତା ବିଷୟରେ କେତେ କେତେ ଗ୍ରନ୍ଥ ରଚନାଠୁଁ ଆରମ୍ଭ କରି ସଂସ୍କାର ପାଇଁ କେତେ କମିଶନ ବସିଲାଣି । ହେଲେ ସାଧୁତା ବଦଳରେ ଶଠତା, ସମୟାନୁବର୍ତ୍ତିତା ବଦଳରେ କର୍ମବିମୁଖତା, ଆଉ ମୂଲ୍ୟବୋଧର ଅବନତି ବଢ଼ି ବଢ଼ି ଚାଲିଛି । ଏଣୁ ତୁମ ଆତ୍ମଜୀବନୀଟା କଣ ଆଲ୍ଲାଦିନର କୁହୁକଦୀପ ପାଲଟିଯାଇ ସମାଜର ସବୁ ଅବ୍ୟବସ୍ଥାକୁ ସୁଧାରିନେବ ।

ମୁଁ ମୋ ବିଦୂଷୀ ପ୍ରେମିକାଙ୍କ ଏଇ ବକ୍ତବ୍ୟକୁ ଚିନ୍ତା କରୁ କରୁ ମୋର ଜଣେ ବାଲ୍ୟବନ୍ଧୁ ଆସି ପହଞ୍ଚିଗଲେ । ସେ ମୋର ଏଇ ଆତ୍ମଜୀବନୀ ଲେଖା ଉପରେ ଏକ ଲଘୁ ମନ୍ତବ୍ୟ ଦେଲେ । କହିଲେ – ଦେଖ ଭାଇ ତୁ ମୋର ପ୍ରାଥମିକ ଶିକ୍ଷାବେଳରୁ ସହପାଠୀ । ତୋତେ ମୁଁ ହାଡ଼େ ହାଡ଼େ ଚିହ୍ନିଛି । ତୁ ଆତ୍ମଜୀବନୀ ଲେଖିବୁ ମାନେ ସବୁ ସତକଥା ଲେଖିବୁ । ଟିକେ ଏପଟ ସେପଟ ହେବୁନି ମୁଁ ଜାଣେ । ହେଲେ ତୋ ପୁଅଟା ଏବେ ଏବେ ରାଜନୀତିରେ ପ୍ରବେଶ କରୁଛି । ଆଉ ମୁଁ ଜାଣେ ତୋ ପୁଅ ଏବେ ଯେଉଁ ପାର୍ଟି ପାଇଁ କାମ କରୁଛି, ତୁ ମୂଳରୁ ସେ ପାର୍ଟିର ଘୋର ବିରୋଧି । ଅବଶ୍ୟ ତୁ କୌଣସି ରାଜନୀତି ବାଲାଙ୍କ ପ୍ରଶଂସକ ବା ନିନ୍ଦୁକ ନୋହୁଁ ମୁଁ ଜାଣେ । ତୁ ନିରପେକ୍ଷ ଲୋକ । ତୁ ତୋ ବାଟରେ ଥାଉ । ହେଲେ ଏବେ ତୋର ଆତ୍ମଜୀବନୀଟା ଯଦି ପ୍ରକାଶ କରିଦେଉ ତା ହେଲେ ବେଶୀ କ୍ଷତି ହେବ ତୋ ପୁଅର । କାରଣ ଆଜିକାଲିକା ରାଜନେତା ମାନଙ୍କ ହୃଦୟ ଏତେ ସଂକୀର୍ଣ୍ଣ ଯେ, ସେମାନେ ତୋ ଆତ୍ମଜୀବନୀରୁ ଜୀରାରୁ ଶିରା କାଢ଼ି ତୋ ପୁଅର କ୍ୟାରିୟରକୁ ବରବାଦ୍ କରିଦେବେ ।

ବାଲ୍ୟବନ୍ଧୁଙ୍କ ବକ୍ତବ୍ୟକୁ ବୋଧେ ସହଧର୍ମିଣୀ ଛପିକରି ଶୁଣୁଥିଲେ । ସେ ଚଟାପଟ୍ ବାହାରି ଆସି କହି ପକାଇଲେ – ୟାଙ୍କୁ ଟିକେ ସେଇକଥା ବୁଝାଅ । ଜୀବନ ସାରାତ ମୋତେ ଜଳେଇଲେ । ପ୍ରେମ କରୁ କରୁ ଯେତେବେଳେ ଧରା ପଡ଼ିଲେ କହିଲେ କଣ ନା ଏଇଟା ପ୍ଲାଟୋନିକ୍ ପ୍ରେମ । ଏବେ ପୁଣି ମୋ ପୁଅର ଜୀବନଟାକୁ ବରବାଦ୍ କରିବାକୁ ବାହାରିଛନ୍ତି ।

ଏଇସବୁ ଟଣା ଓଟରା ଭିତରେ ମୁଁ କେମିତି ଆତ୍ମଜୀବନୀ ଲେଖିବି – ପାଠକେ କହିଲେ । ମୁଁ ଆପଣଙ୍କ ବିଚାରପାଇଁ ଏକଥା ଛାଡ଼ିଦେଲି ।

☐

# ଗାଳି

'ଗାଳି' ଶବ୍ଦଟା ସହ ଆମେ ସମସ୍ତେ ବେଶ ପରିଚିତ । ଦିନ ଭିତରେ ଏମିତି ପରିସ୍ଥିତି ନିଶ୍ଚିତ ଆସିବ ଯେଉଁଥିପାଇଁ ଆପଣ ବା ମୁଁ ନିଶ୍ଚୟ ଗାଳିପଦେ ଶୁଣିଥାଉ । କିଏ କାହାକୁ ବା ଗାଳି ନ ଦିଅନ୍ତି । ବାପ ପୁଅକୁ, ମାଆ – ଝିଅକୁ, ଶାଶୁ–ବୋହୂକୁ, ଅଜା–ନାତିକୁ, ସ୍ୱାମୀ–ସ୍ତ୍ରୀକୁ ଏପରିକି ପ୍ରେମିକ–ପ୍ରେମିକାକୁ ଗାଳିଦେବାଟା ସ୍ୱାଭାବିକ କଥା । ତେବେ ଏ ଗାଳି କେତେବେଳେ ମିଠା ଲାଗେତ କେତେବେଳେ ଖଟାବି ଲାଗେ । ଏଣୁ ଗାଳିକୁ ଆମେ କେତୋଟି ପ୍ରକାରରେ ନେଇ ନିଶ୍ଚୟ ଭାଗ ଭାଗ କରିପାରିବା ।

ପ୍ରଥମେ "ମିଠା ଗାଳି" କଥା ବିଚାରକୁ ନେବା । ଅଜା ନାତି ନାତୁଣୀଙ୍କୁ ଥଟା ତାମସାରେ ଯେଉଁ ଗାଳି ଦିଅନ୍ତି, ତାକୁ ଗାଳି ଭାବରେ ଗ୍ରହଣ ନକରି ବେଶ ହସି ହସି ତାଳିମାରି ହେଉ ବା ଚିଡେଇ ଚିଡେଇ ହେଉ ଉତ୍ସାହିତ କରିଥାଆନ୍ତି । ଏଣୁ ଏଇ ଗାଳିକୁ ମିଠା ଗାଳି କହିଲେ ଠିକ୍ ହେବ ।

ସେହି ପରି ବାପା, ମାଆ ବେଳେବେଳେ ପୁଅ ଝିଅଙ୍କୁ ଖରାପ କାମରୁ ନିବୃତ୍ତ ରହିବାପାଇଁ ଗାଳି ଦେଇଥାନ୍ତି । ଏହି ପର୍ଯ୍ୟାୟର ଭଲବାଟକୁ ଆଣିବା ପାଇଁ ଶିକ୍ଷକ ଛାତ୍ର/ଛାତ୍ରୀମାନଙ୍କୁ, ମାଲିକ ଚାକରଙ୍କୁ ଯେଉଁ ଗାଳି ଦିଅନ୍ତି ତାକୁ ଉପଦେଶାତ୍ମକ ଗାଳି କହିଲେ ଭୁଲ ହେବନାହିଁ ।

ସାହି ପଡିଶା ଭିତରେ କଳି କଜିଆ ଲାଗିଲେ ଅଥବା ଶାଶୁ ବୋହୂକୁ ନିର୍ଯ୍ୟାତନା ଦେବାବେଳେ, କିମ୍ବା ଅଫିସର୍ କର୍ମଚାରୀ ମାନଙ୍କ ଦୋଷ ବାଛି ଫାଇଲ ଫୋପାଡିବା କ୍ଷେତ୍ରରେ ଯେଉଁଗାଳି ପ୍ରୟୋଗ କରାଯାଏ ତାହାକୁ କ୍ରୋଧ ଉଦ୍ରେକକାରୀ ଗାଳି କୁହାଯାଇ ପାରେ । ସେହିପରି ରାଜନୀତି କ୍ଷେତ୍ରରେ ସରକାରୀ ଆଉ ବିରୋଧିଦଳ ମଧ୍ୟରେ ଆସେମ୍ବ୍ଲି ଭିତରେ ହେଉ ବା ବାହାରେ ହେଉ ଯେଉଁ ଗାଳି ଦିଆ ନିଆ ଚାଲେ ତାକୁ ରୋଷ ଓ ଛଳନାର ଏକ ମିଶ୍ରିତ ପ୍ରତିକ୍ରିୟାଶୀଳ ଗାଳି ଶ୍ରେଣୀଭୁକ୍ତ କରାଯାଇପାରେ ।

ହେଲେ ମଦୁଆ ହେଉ କି ପ୍ରେମପାଗଳ ହେଉ ମଦନିଶାରେ ବା ପ୍ରେମ ନିଶାରେ ଗାଳି ଦିଆ ନିଆକୁ ଖଟା ମିଠାତିକ୍ତ କଷାୟ ଗାଳି ଶ୍ରେଣୀଭୁକ୍ତ କରାଯାଇପାରେ । ସେହିପରି ଟ୍ୟୁସନ ମାଷ୍ଟ୍ର ହେଉ କି ଗୀତ ମାଷ୍ଟ୍ର ବା ନାଚ ମାଷ୍ଟ୍ର ତାର ଛାତ୍ରୀକୁ ଆକଟିବା ଢଙ୍ଗରେ ଯେଉଁ ସବୁ ଚାପୁଡ଼ା ମାରିଥାଏ ତାକୁ ସାବଧାନ ବା ସତର୍କ ଘଣ୍ଟିମୂଳକ ଗାଳି କହିଲେ ଅତ୍ୟୁକ୍ତି ହେବନାହିଁ ।

ଉପସଂହାରରେ ଆଉ ଗୋଟିଏ ପ୍ରକାର ଗାଳି କଥା ଉଲ୍ଲେଖ କରୁଛି । କବି ବା ଲେଖକ ଲେଖା ଲେଖିରେ ବ୍ୟସ୍ତଥାଇ ଘରେ ଜଞ୍ଜାଳ ଭୁଲିଗଲେ ଘରଣୀ ଆସି ତାଗିଦା କରି ଯେଉଁ ଗାଳି ଦିଅନ୍ତି ସେହି ଗାଳିଟା କେତେବେଳେ ଅମୃତ ଭଳି ଲାଗେ ତ କେତେବେଳେ ବିଷଭଳି ଲାଗେ । ଏଣୁ ଏହାକୁ କେଉଁପ୍ରକାର ଗାଳି କୁହାଯିବ ପାଠକେ ବିଚାର କରୁନ୍ତୁ ।

□

# କ୍ରାଇମ୍-ଫାଇଲ୍

ଏକ ପ୍ରତିଷ୍ଠିତ ଟି.ଭି. ଚାନେଲରେ ଏହି ନାମରେ ଏକ ଧାରାବାହିକ ପ୍ରସାରିତ ହେଉଥିବା କଥା ଆମେ ପ୍ରାୟ ସମସ୍ତେ ଜାଣନ୍ତି । ମୁଁ ଏଠାରେ ସେଇ ସିରିଏଲ୍ ବିଷୟରେ କହୁନାହିଁ କିମ୍ୱା ସେ ଧାରାବାହିକ ସହ ଏ ଲେଖାର କୌଣସି ସମ୍ପର୍କ ନାହିଁ ।

ଆମର ନିଜ ତୃତୀୟ ନୟନରୁ ଆମେ ଯେଉଁ କ୍ରାଇମ୍ ଫାଇଲ୍‌ଟିକୁ ଅନୁଧ୍ୟାନ କରୁଛୁ ତାହା ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭରୁ ଆହରଣ କରୁଥିବା କିଛି କ୍ରାଇମ୍ ଭିତ୍ତିକ ସମ୍ବାଦକୁ ନେଇ ।

ପ୍ରଥମେ ଆମେ ନେବା ପୋସ୍କୋ ଚୁକ୍ତିକୁ । ଏହି ଚୁକ୍ତି ଫଳରେ ରାଜ୍ୟରେ ଏକ ବିରାଟ ଇସ୍ପାତ କାରଖାନା ଗଠିତ ହେବ, ବହୁ ଲୋକ ନିଯୁକ୍ତି ପାଇବେ ଏହି ଡିଣ୍ଡିମ ପିଟା ଚାଲିଛି । ହେଲେ ଏଇ କାରଖାନା ପ୍ରତିଷ୍ଠା ଫଳରେ ପାନ, ମୀନକୁ ନେଇ ବଞ୍ଚୁଥିବା ଶହ ଶହ ପରିବାର ଉଦ୍‌ବାସ୍ତୁ ହେବେ । ଜଙ୍ଗଲ ନଷ୍ଟ ହେବ, ଝଡ଼ବାତ୍ୟାର ପ୍ରକୋପ ବଢ଼ିବ ଏକଥା କ'ଣ ଚୁକ୍ତି ବେଳେ ବିଚାରକୁ ନିଆଯାଇଛି । ବୋଧହୁଏ ନୁହେଁ । ହଁ ଜନସାଧାରଣଙ୍କୁ ପ୍ରଲୋଭିତ କରିବା ପାଇଁ ମଲ୍‌ଟି ନ୍ୟାସନାଲ୍ କମ୍ପାନୀ ଖୁବ୍ ଚାକଚକ୍ୟ ପ୍ୟାକେଜ୍‌ର ଘୋଷଣା କରିଥା'ନ୍ତି । ଏହି ପ୍ୟାକେଜ୍‌କୁ କଡ଼ାକଡ଼ି କାର୍ଯ୍ୟକାରୀ କରିବା ପାଇଁ କିଛି ବ୍ୟୁରୋକ୍ରାଟ୍ ଆଉ ରାଜନେତା ପରସ୍ପର ହାତ ମିଳାମିଳି ହୋଇ ବଜ୍ର ଘୋଷଣା କରିଥା'ନ୍ତି । ହେଲେ ଶେଷକୁ ହାତୀ ପାଡ଼ିବ ଫୁସ୍ ପରି ସବୁ ପାଣି ଫୋଟକା ପରି ମିଳେଇ ଯାଏ ।

ଏଣୁ ଏହା ମଧ୍ୟ ଜନସାଧାରଣଙ୍କ ଜୀବନଧାରାକୁ ପ୍ରତିହତ କରିବା ପାଇଁ ରୀତିମତ୍ କ୍ରାଇମ୍ ନୁହେଁ କି ?

ଆଉ ଏକ କଥା ସେକ୍ସ-ସ୍କାଣ୍ଡାଲ । ଏହି ସ୍କାଣ୍ଡାଲ ନେଇ ବେଶ୍ ଝଡ଼ ସୃଷ୍ଟି ହୁଏ । ପୋଲିସ ତା'ର କରିସ୍ମା ଦେଖାଏ । କିଛି ତଥ୍ୟ ପଦାକୁ ଆସେ, ଅଥଚ

ଯେତେବେଳେ ଜଣାଯାଏ ଏଇ ସ୍କାଣ୍ଡାଲ୍‌ରେ ଖୋଦ୍ ପୋଲିସ୍ ଅଧିକାରୀ ଏବଂ ରାଜନେତା ସମ୍ପୃକ୍ତ ଅଛନ୍ତି, ତଦନ୍ତର ଭଙ୍ଗା ପଡ଼ିଆସେ । ବେଳେବେଳେ ସଚ୍ଚୋଟ ତଦନ୍ତକାରୀ ଅଫିସରଙ୍କୁ ଧମକ ଦିଆଯାଏ ଅଥବା ବଦଳି କରି ଭଲ ଜାଗାକୁ ପଠାଇ ପୁରସ୍କୃତ କରାଯାଏ । ଏ କ୍ଷେତ୍ରରେ ଉତ୍ତମ ଉଦାହରଣଟିଏ ମୀନା ଅପା ସେକ୍ସ ସ୍କାଣ୍ଡାଲ କଥା ।

ଶେଷରେ ଆଉ ଏକ କଥା । ଏକ କଲେଜ ଛାତ୍ରୀ କେତେଜଣ ଅଧ୍ୟାପକଙ୍କ ଦ୍ୱାରା ମାନସିକ ନିର୍ଯ୍ୟାତନା ପାଇ ଆତ୍ମହତ୍ୟା କଲେ । ଛାତ୍ର ଆନ୍ଦୋଳନ ହେଲା । ଫାଟକରେ ତାଲା ପଡ଼ିଲା । ଯଦି ସମ୍ପୃକ୍ତ ଅଧ୍ୟାପକ କେଉଁ ଦଳଭୁକ୍ତ ହୋଇଥିବେ ତେବେ ସେଇ ଅନୁସାରେ କ୍ରାଇମ୍ ତା' ବାଟ ଧରିବ । ଅଧ୍ୟାପକ ସରକାରୀ ଦଳର ଆଶୀର୍ବାଦ ପାଇଲେ ଆନ୍ଦୋଳନ ଥମିବ ନିଶ୍ଚୟ । ଅନ୍ୟଥା ଫୁଲଝରି କିଛି ସମୟ ଜଳି ଲିଭିଲା ପରି ଅବସ୍ଥା ହେବ ।

ଏଣୁ ଆମ ତୃତୀୟ ନୟନ କହେ ଏହି ସର୍ବଦଳୀୟ ଗଣତନ୍ତ୍ରହିଁ ସବୁ କ୍ରାଇମ୍‌ର ଆଜି ମୂଳ ଉତ୍ସ । ହେଲେ ଗଣତନ୍ତ୍ରକୁ ମୁଦାଲା କରି ଜନସାଧାରଣ କ'ଣ ସତରେ ଏକଜୁଟ୍ ଭାବେ ମୁଦେଇ ହୋଇପାରିବେନି ।

□

# ପୁରୁଣା ଗୀତ

ହଠାତ୍ ଦିନେ ଦୂରଦର୍ଶନରେ ଗୋଟିଏ ଘରୋଇ ଚ୍ୟାନେଲର ଏକ ସଂଗୀତ ଭିତ୍ତିକ କାର୍ଯ୍ୟକ୍ରମର ଦେଖିବାର ସୁଯୋଗ ପାଇଲି ।  ଆଙ୍କରିଂ କରୁଥିବା ଭଦ୍ରଲୋକ ଜଣକ କହିଲେ ଏବେ ଚାଲନ୍ତୁ ଆମେ ଗୋଟିଏ ପୁରୁଣା ଗୀତ ଶୁଣିବା । କାରଣ ପୁରୁଣା ଗୀତ ଗୁଡ଼ିକ ଭଲ ରଚନା ଏବଂ ଭଲ ସ୍ୱର ସଂଯୋଜନା ହେତୁ ଆମକୁ ଖୁବ୍ ଭଲ ଲାଗେ । ସେହି ପୁରୁଣା ଗୀତର ମୂଳଦୁଆ ଉପରେ ଆଜି ଆମେ ନୂଆ ନୂଆ ଢଙ୍ଗର ଗୀତ ଗାଇ ପାରୁଛେ ଏବଂ ଶ୍ରୋତା/ଦର୍ଶକ ମାନଙ୍କର ମନୋରଞ୍ଜନ କରିପାରୁଛେ ।

ମୋ ମନଟା ଟିକେ ଅଟକି ଗଲା । ଦେଖିବା ଗୋଟେ ପୁରୁଣା ଗୀତ ଶୁଣିବା । ଭଲ ଲାଗିବ ନିଶ୍ଚୟ । ମୁଁ ମନେ ମନେ ଭାବିଲି ବୋଧହୁଏ ଭଞ୍ଜଙ୍କର କିମ୍ବା ଅଭିମନ୍ୟୁଙ୍କର ଗୀତ ହୁଏତ ବୋଲାଯିବ । ପୁଣି ଭାବିଲି ନା ଏହାତ ନିଛକ ଏକ ଆଧୁନିକ ଓ ଲୋକ ଗୀତର ମିଶ୍ରିତ ସୁଗମ ସଂଗୀତ କାର୍ଯ୍ୟକ୍ରମ । ଏଣୁ ପୁଣି ଭାବିଲି ବୋଧହୁଏ ଜୀବନାନନ୍ଦ ପାଣିଙ୍କର କିମ୍ବା କାଳୀଚରଣ ପଟ୍ଟନାୟକଙ୍କ ଭଲ ଭଲ ଗୀତ ଗାଇଥିବା ବାଳକୃଷ୍ଣ ଦାଶ

କିମ୍ଵା ପ୍ରଣବ ପଟ୍ଟନାୟକଙ୍କ ଗୀତ ପରି ଏହା ଏକ ଉଚ୍ଚକୋଟୀର (ନିର୍ବାଚିତ) ଗୀତ ହୋଇଥିବ ନିଶ୍ଚୟ ।

କାନଡେରି ଶୁଣିଲି – ଶିଳ୍ପୀ ଜଣଙ୍କ ଗାଇଲେ – "ଏତେ ବଡ ହୋଟେଲରେ ତୁମେ ଜଣେ ମାତ୍ର ଦିଦି, ମ୍ୟାନେଜର ଠାରୁ ୱେଟର ଯାଏ, ୱେଟର ଠାରୁ ଦରଓ୍ଵାନ୍ ଯାଏ କିଏ ସେ କରିବ ସାଦି ।" ପରବର୍ତ୍ତୀ ଧାଡ଼ି ଗୁଡ଼ିକ ଆଉ ମନେ ରଖି ହେଲାନାହିଁ । କାରଣ ଶୁଣିବା ପାଇଁ ଆଗ୍ରହ ମରି ମରି ଯାଉଥାଏ । ତେବେ ଗୀତ ଭିତରେ ବର୍ଣ୍ଣନା ଥାଏ – ସେଇ ଦିଦିଟି ଆଠ ରଙ୍ଗର ଟିକିଲି ମଥାରେ ଲଗାଇଛି । ପୁନଶ୍ଚ ସେ ତାର ରୁମ୍‌କୁ ଡାକି ତା ଶରୀରର ସମସ୍ତ ମାପଚୁପ ଆପେ ଆପେ ଦେଇ ଦେଉଛି । ଯାହା ଫଳରେ ସେ ଫିଲ୍ମ୍‌ରେ ହିରୋଇନ୍ ହୋଇଯାଇପାରିବ ସହଜରେ ।

ଦେଖିଲେ ତ ଆଜ୍ଞା । ଓଡ଼ିଶାର ଏକ ପ୍ରସିଦ୍ଧ ଘରୋଇ ଚ୍ୟାନେଲରେ ପ୍ରସାରିତ ପୁରୁଣା ଓଡ଼ିଆ ସଂଗୀତ । ସବୁଠାରୁ ଆଶ୍ଚର୍ଯ୍ୟର କଥା – ଆଙ୍କର କହିଲେ ଏହିଭଳି ଏକ ସୁନ୍ଦର ପୁରୁଣା ଗୀତ ଗାଇଥିବାରୁ ଅନୁଷ୍ଠାନ ତରଫରୁ ତାଙ୍କୁ ଧନ୍ୟବାଦ । ଆପଣମାନେ ବିଚାର କରନ୍ତୁ ଏବେ ଆପଣ ଏହିଭଳି ପୁରୁଣା ସଂଗୀତ ଶୁଣି ଶୁଣି ଭଞ୍ଜ, ଅଭିମନ୍ୟୁଙ୍କଠାରୁ ଆରମ୍ଭ କରି ଜୀବନାନନ୍ଦ ପାଣି, କାଳିଚରଣ ପଟ୍ଟନାୟକ, ଲୋକନାଥ ପଟ୍ଟନାୟକଙ୍କୁ ଭୁଲିଯିବେ ନା ନିଜକୁ ଧିକ୍ ଓଡ଼ିଆ କହି ମୁଣ୍ଡ ବାଡ଼େଇବେ !!

# ନିର୍ବାଚନ ଚଟଣି

**ହେ**ଇ ନିର୍ବାଚନ ଆସିଯିବ । ଚାହୁଁ ଚାହୁଁ ଆସିଗଲା ବି ନିର୍ବାଚନ । ଭୋଟ୍ ପ୍ରଚାରରେ ଏଥର ଆଗରୁ ଲୋକପ୍ରିୟ ହୋଇଥିବା ଆଲବମ୍ ଗୀତସୁରର ଅନେକ ନିର୍ବାଚନୀ କ୍ୟାସେଟ୍ ପ୍ରସ୍ତୁତ ହେଲା । ଯା ହେଉ କିଛି ଗୀତିକାର, ଗାୟକ, ଗାୟିକା ବି କିଛି କିଛି ପଇସା ରୋଜଗାର କରିଗଲେ । ହେଲେ ଆମେ (ମାନେ) ମୁଁ ବହୁ ଦିନରୁ ଜଣେ ଗୀତିକାର ହୋଇ ଥିଲେ ବି ମୋତେ କେହି ଧାଡ଼ିଟିଏ ଲେଖିବା ପାଇଁ କହିଲେ ନାହିଁକି ପଇସା ଟିଏବି ଦେଲେନାହିଁ । ମନଟା ହାଇଁପାଇଁ ହୋଇ ରହିଗଲା ।

ସେ ଯାହା ହେଉ ଭୋଟର ଲିଷ୍ଟରେ ମୋର ଓ ମୋ ପରିବାରର ଲିଷ୍ଟ ଥିଲା । ହେଲେ ଲିଷ୍ଟ ଠିକ୍ ଥିଲେ ବି ପଦବୀ ହୋଇଥିଲା ଏଣୁ ତେଣୁ । ଏହାଛଡ଼ା ମୋ ସ୍ତ୍ରୀ ମୋ ଠାରୁ ମାତ୍ର ମାସଟିଏ ସାନ ଥିଲେ ବି ଭୋଟ୍ ପରିଚୟ ପତ୍ରରେ ୫ ବର୍ଷ ସାନ । ପୁନଶ୍ଚ

ମୋ ପୁଅଠାରୁ ମୋ ବୋହୂର ବୟସ ଏକବର୍ଷ ଅଧିକ । ସେ ଯାହା ହେଉ ଏସବୁ ସତ୍ତ୍ୱେବି ଆମେ ଭାଗ୍ୟବାନ କାରଣ ଆମେ ଭୋଟ୍‌ଦେଇ ପାରିଲୁ ।

କିନ୍ତୁ ଖବର କାଗଜରୁ ଜଣାଗଲା କଟକ ସଦର ନିର୍ବାଚନ ମଣ୍ଡଳୀରେ ଶହ ଶହ ହଜାର ହଜାର ଜୀବନ୍ତ ଲୋକଙ୍କର ଭୋଟର୍ ଲିଷ୍ଟ୍‌ରେ ନାଆଁ ନଥିବାରୁ ସେମାନେ ଭୋଟ୍ ଦେଇ ପାରିଲେ ନାହିଁ । ସବୁଠାରୁ ମଜାକଥା ହେଲା ଆମ ରାଜ୍ୟର ଜଣେ ଅବସର ପ୍ରାପ୍ତ ଆଇ.ଏ. ଏସ୍, ତଥା ବି. ଜେ.ଡି. ସରକାର ତଥା ଖୋଦ୍ ମୁଖ୍ୟମନ୍ତ୍ରୀଙ୍କର ବ୍ୟକ୍ତିଗତ ପରାମର୍ଶଦାତା ମହାପାତ୍ର ବାବୁଙ୍କ ନାଆଁଟା ବି ଭୋଟର ଲିଷ୍ଟ୍‌ରେ ନଥିଲା । ଏଣୁ ସେ ଭୋଟ୍ ଦେଇ ପାରିଲେ ନାହିଁ । ଅଥଚ ଅନେକ ମୃତ ଲୋକ ବି ସ୍ୱର୍ଗରୁ ବା ନର୍କରୁ ଆସି ଭୋଟ୍ ଦେଇଗଲେ ।

ସେହିପରି କେତେକ ଗାଁରେ ଲୋକମାନେ ପ୍ରଶାସନ ବା ସରକାର ତାଙ୍କର କୌଣସି ଦୁଃଖ ଦୁର୍ଦ୍ଦଶା କଥା ଶୁଣୁନାହାନ୍ତି ବୋଲି ଅଭିମାନରେ ଭୋଟ୍ ଦେଲେନାହିଁ । ତେବେ ପ୍ରକୃତ ଗଣତନ୍ତ୍ରରେ ବିଶ୍ୱାସ କରୁଥିବାରୁ ନେତାଏ ସିନା ଏ ଅଭିମାନକୁ ଗୁରୁତ୍ୱ ଦିଅନ୍ତେ । ଇୟେ ନେତାଗଣତି ନୋଟ୍ ଭୋଟ୍ ଲୋଟ୍ ପାଟ ସଂହିତାର ବିଶ୍ୱାସୀ ।

ତେବେ ଯାହାହେଉ ଏଇ ନିର୍ବାଚନ ପ୍ରକ୍ରିୟା କୁହ କି ଭୋଟର ଲିଷ୍ଟ୍ ପ୍ରସ୍ତୁତିର ତାମ୍‌ସା କୁହ ଯେଉଁଦିନ ସ୍ୱୟଂ ପ୍ରଧାନମନ୍ତ୍ରୀ ଆଉ ରାଷ୍ଟ୍ରପତିଙ୍କ ଭୋଟ୍ ଲିଷ୍ଟ୍‌ରେ ନାଆଁ ନଥାଇ ଭୋଟ୍ ଦେଇ ପାରିବେ ନାହିଁ ସେହିଦିନ ହୁଏତ କିଛି ବିକଳ୍ପ ବ୍ୟବସ୍ଥାର ଚିନ୍ତା କରାଯିବ ।

ଦେଖାଯାଉ କଣ ହେଉଛି । ତେବେ ଏଇ ନାଆଁ ନଥିବା ସୁଚେଇ ଦିଏ ଯେଆମ ସେକ୍ରେଟାରିଏଟ୍ ଫାଇଲ୍‌ରେ ଅନେକ ନଥିପତ୍ର ନଥିବା, ପେନ୍‌ସନ୍ ପେପରରେ ଗ୍ରାଚୁଇଟି୍ ଆଦେଶପତ୍ର ନଥିବା, ଚିଠିର ପ୍ରାପ୍ତିସ୍ୱୀକାର ପତ୍ର ଚିଠି ପ୍ରେରକ ପାଖରେ ଥିଲେ ବି ଚିଠି ପହଞ୍ଚିବା ଅଫିସରେ ଦରଖାସ୍ତ ନଥିବା ଇତ୍ୟାଦି, ଇତ୍ୟାଦି, ଇତ୍ୟାଦି ।

□

# କ୍ୟାସେଟ୍ କନ୍ୟା ବୃତ୍ତାନ୍ତ

ଆଗେ ଆମେ କାହାଣୀରେ ମତ୍ସ୍ୟକନ୍ୟା କଥା ପଢୁଥିଲେ । ବେଳେ ବେଳେ ମତ୍ସ୍ୟକନ୍ୟା କିଏ କେମିତି ସମୁଦ୍ର କୂଳରେ ଦେଖିବା କଥା ମଧ୍ୟ ଖବର କାଗଜରୁ ପଢ଼ିବାକୁ ମିଳେ । ଏଇ ମତ୍ସ୍ୟକନ୍ୟାମାନେ ମଧ୍ୟ ଖୁବ୍ ସୁନ୍ଦରୀ । ନିକଟରେ ଗୋଟିଏ ସମ୍ଭ୍ରାନ୍ତ ଓଡ଼ିଆ ପତ୍ରିକାରେ ଜଣେ ମଡେଲ ମଧ୍ୟ ମତ୍ସ୍ୟକନ୍ୟାର ପୋଷାକ ପିନ୍ଧି ପ୍ରଚ୍ଛଦ ପଟ୍ଟପାଇଁ ପୋଜ୍ ଦେଇଥିଲେ ।

ଏବେ କିନ୍ତୁ ଯୁଗ ବଦଳିଛି । ମତ୍ସ୍ୟକନ୍ୟା ପରିବର୍ତ୍ତେ ଏବେ କ୍ୟାସେଟ୍‌କନ୍ୟାମାନେ ଟି. ଭି. ପରଦାରେ ଅଙ୍ଗଭଙ୍ଗି ଦେଖାଇ ଦ୍ୱିଅର୍ଥବୋଧକ ଗୀତର ତାଳେ ତାଳେ ଏମିତି ନାଚୁଛନ୍ତି ଯେ ଯୁବକ କଣ ବୃଦ୍ଧର ମଧ୍ୟ ମୁଣ୍ଡ ଘୁରେଇ ଦେଉଛି ।

ଏମାନେ ମାନେ ଏଇ କ୍ୟାସେଟ୍ କନ୍ୟାମାନେ କେତେବେଳେ ଉଭା ହୁଅନ୍ତି ସମ୍ବଲପୁରୀ ରୂପରେ, କେତେବେଳେ ବ୍ରହ୍ମପୁରୀ ରୂପରେ, ଆଉ ପୁଣି କେତେବେଳେ ବଙ୍ଗାଳୁଣୀ ତ କେତେବେଳେ ଓଡ଼ିଆଣୀ ରୂପରେ । ଏମାନେ କେତେବେଳେ ହୁଅନ୍ତି ଛିଟପାରା ପୁଣି କେତେବେଳେ ହୁଅନ୍ତି ଆଟମ୍‌ବମ୍ । ମୋଟ ଉପରେ ଭୀମକାନ୍ତ ରୂପରେ ଏମାନେ ଟି.ଭି. ପରଦାରେ ଉଭା ହୁଅନ୍ତି । ସବୁଠାରୁ ମଜା କଥାହେଲା ଏବେ ପୁଅମାନଙ୍କ ପୋଷାକ ଖୁବ୍ ବେଶୀ ଲମ୍ବା ହୋଇଥିବା ବେଳେ ଏଇ କ୍ୟାସେଟ୍ କନ୍ୟାମାନଙ୍କ ପୋଷାକ କମି କମି ଯାଉଛି । ଏମାନଙ୍କ ପୋଷାକ ଏବେ ଏତେ କମିଗଲାଣି ଯେ, ପୁରୁଷଙ୍କର ଜଙ୍ଘିଆ ଠାରୁ ବି ଛୋଟ ସାଇଜ୍ ହୋଇଗଲାଣି ।

ଆଗରୁ କନ୍ୟା ବେଦୀ ଉପରକୁ ଗଲାବେଳେ ଲାଜ ସଢ ସଢ ହୋଇ ଥିରି ପାଦରେ ଓଢ଼ଣୀ ଟାଣି ବଧୂବେଶ ସାଜୁଥିଲା । ଏବେ କିନ୍ତୁ ସେହି ଓଢ଼ଣୀ ଖସେଇଦେଲେ ସାରା ଓଡ଼ିଶା ଚହଲି ଯାଉଛି । ପୁନଶ୍ଚ କେଉଁ କ୍ୟାସେଟ୍ କନ୍ୟା ଯଦି କହୁଛି ମୋ ଦିଲ୍ ନେଇଯା – ବଦଳରେ ଓଡ଼ିଶାରୁ ଫାଳେ ଦେଇଯା । ପୁଣି କିଏ କହୁଛି ମୋ ଛାତିରୁ ଚୁନ୍‌ରି ଖସିଲେ ପରୀକ୍ଷା ହଲରେ ପରୀକ୍ଷକ ଆଉ ପରୀକ୍ଷାର୍ଥୀଙ୍କ ମୁଣ୍ଡ ଗରମ । କି, ଗୁଣ ଗାଇବା ଏଇ କ୍ୟାସେଟ କନ୍ୟାମାନଙ୍କର । ଏମାନେତ ଖଜୁରୀଗଛ ।

◻

# ଆଧୁନିକ ଭଜନ

ଯୁଗେ ଯୁଗେ ଭକ୍ତ ଆଉ ଭଗବାନ ମଧ୍ୟରେ ଯୋଗସୂତ୍ର ରୂପେ ଭଜନ ତାର କାର୍ଯ୍ୟ ନିର୍ବାହ କରିଆସିଛି । ଭଗବାନଙ୍କ ସହ ଭକ୍ତର ସମ୍ବନ୍ଧ ଏଇ ଭଜନ ମାଧ୍ୟମରେ ସ୍ଥାପିତ ହୋଇଥାଏ । ଭଗବାନ୍‌ହିଁ ଏହି ଅନନ୍ତ ସୃଷ୍ଟିର ବିକାଶକର୍ତ୍ତା । ସେ ସବୁ ପ୍ରାଣୀଙ୍କର ପାଳନ କର୍ତ୍ତା । ସେ ପୁଣି ଜ୍ଞାନଦାତା ଆଉ ଦଣ୍ଡଦାତା । ସେ ସୁଖଦାତା, ସେ ପୁଣି ଦୁଃଖର ତ୍ରାଣକର୍ତ୍ତା । ଏଇଥିପାଇଁ ମୃଗୁଣୀର ସ୍ତୁତି ଶୁଣିଥିଲେ ସେ । ଗଜର ଉଦ୍ଧାରଣ ପାଇଁ ଧାଇଁ ଆସିଥିଲେ । ପୁନଶ୍ଚ କୁରୁସଭାତଳେ ଦ୍ରୌପଦୀର ମାନରକ୍ଷା ପାଇଁ ଓହ୍ଲାଇ ଆସନ୍ତି ବୈକୁଣ୍ଠପୁରରୁ । ଠିକ୍ ସେହିପରି ଚଣ୍ଡାଳୁଣୀର ଭକ୍ତିରେ ମୁଗ୍ଧ ହୋଇ ସ୍ୱୟଂ ନାରାୟଣୀ ଚାଲି ଯାଇଥିଲେ ତାର ଦରିଦ୍ର କୁଡ଼ିଆ ଦୁଆରେ ଅଙ୍କା ହୋଇଥିବା ପଦ୍ମଫୁଲରେ ପାଦ ଥୋଇ । ବଲ୍ଲରୀବାସ ହୋଇଥିବା ଚନ୍ଦନଉଆସ ଉପରୋକ୍ତ ଉଦାହରଣ ଗୁଡ଼ିକରୁ ପ୍ରତୀୟମାନ ହୁଏ ଭକ୍ତର ଭାବରେ କାଳେ କାଳେ ଭଗବାନ୍ ବନ୍ଧା ଏଇଥିପାଇଁ ଆଜି ଭକ୍ତ ସାଲବେଗ, ଭକ୍ତ ଦାସିଆ ଆଉ ଭକ୍ତ ମୀରା ଘରେ ଘରେ ପରିଚିତ । ପ୍ରକୃତରେ ପ୍ରେମାଭକ୍ତ ଏ ସଂସାରରୁ ମୁକ୍ତି ଚାହେଁ ନାହିଁ ସେ ଚାହେଁ ଏଇ ଦୁନିଆରେ ପ୍ରଭୁଙ୍କର ଲୀଳାକୀର୍ତ୍ତନ କରି ତାର ଜୀବନ କଟିଯାଉ । ତା ଦୃଷ୍ଟିରେ ଭଗବାନ ଅରୂପ ନୁହେଁ ସ୍ୱରୂପ । ଏଇଥିପାଇଁ ସେ ଭଗବାନଙ୍କୁ ପାଇଛି କେତେବେଳ ରାମରୂପରେ ତ କେତେବେଳେ କୃଷ୍ଣରୂପରେ । ମାତ୍ର ଯୁଗ ବଦଳିଯାଇଛି । ଏବେ ଭଜନରେ ଆଧୁନିକ ରୂପ ଦେଖିଲେ ଭକ୍ତିଭାବ ତ ଆସୁନାହିଁ ବରଂ ପ୍ରେମାଭାବ ସହଜାତ ହେଉଛି । ଏଇ ପ୍ରେମ ପୁଣି ଅପ୍ରାକୃତ ନୁହେଁ । ଏହ ଖାଣ୍ଟି ଦୈହିକ । ଷୋଳପଣ ରକ୍ତମାଂସ ସ୍ୱେଦ ଜନିତ କାମବିକାର । ଭଜନର ଧାରା ବଦଳିଛି । ଦିନେ ଭକ୍ତ କହୁଥିଲା ଜଗନ୍ନାଥହୋ କିଛି ମାଗୁନାହିଁ ତୋତେ ମାଗୁଛି ଶରଧା ବାଲିରୁ ହାତେ । କିନ୍ତୁ ଆଜିର ଭକ୍ତ ନାଚି ନାଚି ଅଣ୍ଟା ଦୋହଲାଇ ଆଖି ମିଟିକା ମାରି ମୁରୁକି ହସି ଭଗବାନଙ୍କୁ ଚାହିଁ ତା ସ୍ତ୍ରୀ ବା ପ୍ରେମିକାର ହାତ ଧରି ବଡ଼ ଦାଣରେ କହୁଛି ଟିକେ ହାଉଲେ ଚାଲ ଭାରି ଭିଡ଼ । ପାଦ ଟିପି ଟିପି ଚାଲ କାରଣ ମନ୍ଦିର ଚଟାଣ ଭାରି ଖସଡ଼ା । ଏଇ ମନ୍ଦିରଟା ନିଶ୍ଚୟ ଭକ୍ତର ସହଚରୀର ମନମନ୍ଦିର । ସେଇ ମନ୍ଦିର ଚଟାଣ ଏବେ ପ୍ରୀତି ଜର ଜର ହୋଇ ବଡ଼ ଖସରା । ଏହିଭଳି କିମ୍ଭୁତ କିମ୍ଭାକାର ଭାବଧାରାର ସୃଷ୍ଟି ହେଉଛି ଆଧୁନିକ ଭଜନ ।

## କ୍ୟାସେଟ୍ କନ୍ୟା

ଏଇଠି ଆଧୁନିକ ଭଜନର କେତେଗୋଟି ଉଦାହରଣ ଦେଉଛି । ପଡ଼ିଶା ଘର ଝିଅ ଯାଉଛି ଶିବ ମନ୍ଦିର । ଏଇ ଭଜନଟିର ଆଲବମ୍ ଦୃଶ୍ୟ ଦେଖିଲେ ଜଣାଯାଏ ଜଣେ ଖୁବ୍ ସୁନ୍ଦରୀ ତରୁଣୀ ସବୁଜ ରଙ୍ଗର ଶାଢ଼ୀ ପିନ୍ଧି ଶିବ ମନ୍ଦିର ଆଡ଼େ ଯାଉଛି । ତାର ଚାଲିରେ ଛଇ ଛଟକରେ ଚାହାଣିରେ ଓ ଅଙ୍ଗ ଭଙ୍ଗୀରେ କେଉଁଠି ବି ଭକ୍ତିର ସୂଚନା ନାହିଁ । କେବଳ ଦର୍ଶକର ଚିତ୍ତ ଚହଲେଇବା ହେଉଛି ମୁଖ୍ୟ ଲକ୍ଷ୍ୟ । ଏଇ ଲକ୍ଷ୍ୟଟା ସେ ଯୁବତୀର ନୁହଁ । ଏହା ହେଉଛି ସେଇ କ୍ୟାସେଟ୍ କମ୍ପାନୀର । ଯିଏ ଟି.ଭିରେ ଏହାକୁ ପ୍ରଦର୍ଶନ କରାଇ ଯୁବ ମାନସକୁ ବିଭ୍ରାନ୍ତ କରିବ । ଆଉ ତାର କ୍ୟାସେଟ୍ ମଧ୍ୟ ଭଲ ବିକ୍ରୀ ହେବ । ସେହିପରି ଆଉ କେତୋଟି ଭଜନର ଉଦାହରଣ ନିଆଯାଇପାରେ ଏଇ ଯେମି ଅଳତା ନାଇଛୁ ରାଧାଲୋ, ହାତ ମାରନା ଭାରୀ ଗରମ, ଢ଼ିଙ୍କି ଦେ ଦୁଲୁକେଇଲୋ ଇତ୍ୟାଦି ଇତ୍ୟାଦି । ଏଇ ପ୍ରତ୍ୟେକ ଆଧୁନିକ ଭଜନର ଲକ୍ଷ୍ୟ ହେଲା ସୁନ୍ଦରୀ ଯୁବତୀମାନଙ୍କୁ ସଂଗୀତର ତାଳେ ତାଳେ ନଚାଇ ଜନମାନସକୁ ବିଭ୍ରାନ୍ତ କରିବା ଆଉ କ୍ୟାସେଟ୍‌ର ବିକ୍ରୀ ବୃଦ୍ଧି କରିବା । ଆମ ସଂସ୍କୃତିର ଏଇ ଅବକ୍ଷୟ ପାଇଁ ବିଶେଷତଃ ଜଗନ୍ନାଥ ସଂସ୍କୃତିର ବିକାଶ ନାଆଁରେ ଏଇ ବିକାଶ ରଥ ପରିହାର ପାଇଁ ଆସେମ୍ବ୍ଲିରେ ସ୍ୱୟଂ ବାଚସ୍ପତି ମଧ୍ୟ ବ୍ୟଥିତ । ଜନସାଧାରଣଙ୍କ ମଧ୍ୟରେ ମଧ୍ୟ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଉଛି । ହେଲେ ସରକାରଙ୍କ ତରଫରୁ କୌଣସି ସେନ୍‌ସର ବ୍ୟବସ୍ଥା ଏଯାବତ୍ ହେଉନାହିଁ । ତାହାହିଁ ପରିତାପର ବିଷୟ । ଯୁଗ ବଦଳୁଛି । ଗଣମାଧ୍ୟମର ବିକାଶ ମଧ୍ୟ ହେଉଛି । ଏହାର ଅର୍ଥ ନୁହେଁ ଯେ, ଏହାର ଫାଇଦା ଉଠାଇ ବ୍ୟବସାୟିକ ମନୋବୃତ୍ତି ନେଇ ଗୋଟାଏ ଜାତିର ସଂସ୍କୃତି ଧାରାରେ ବାଧା ଠିଆ କରାଇବା । ଏ ଯୁଗରେ ମଧ୍ୟ ଏ ଯୁଗର କବି ଲେଖୁଛି – ବଡ଼ଦାଣ୍ଡ ଚାଲେ ତବ ନନ୍ଦିଘୋଷ ରଥ ମନଦାଣ୍ଡେ ବାରେ ଆସ ଜଗନ୍ନାଥ । କିମ୍ବା କୋଠ ଭୋଗଖିଆ ହେ ଚକା ଆଖିଆ ଉଠହେ ପହଡ଼ ଭାଙ୍ଗି କିମ୍ବା ମୁଁ ଆସିଛି ଦେଖି ମୋ କଳାବଦନକୁ ମୋ କାଳିଆ ଧନକୁ । ଏଣୁ ଗୀତିକବିମାନେ କ୍ୟାସେଟ୍ କମ୍ପାନୀର କେଇଟା ଟଙ୍କା ଲୋଭରେ ଏଭଳି ବିକୃତ ମାନସିକତା ନେଇ ଗୀତ ଲେଖନ୍ତୁ ନାହିଁ । ଗାୟକ ଗାୟିକା ଗାଆନ୍ତୁ ନାହିଁ । ଜନସାଧାରଣ ଜାଗି ଉଠନ୍ତୁ । ଦେଖିବେ ଭଜନରେ ଏ ବ୍ୟଭିଚାର ବନ୍ଦ ହେବାକୁ ବେଶୀଦିନ ଲାଗିବ ନାହିଁ । ବେଳଥାଉଁ ଥାଉଁ ସାଧୁ ସାବଧାନ ।

□

# ମେଧା ଯଜ୍ଞ

ପୁରାଣ ଯୁଗରେ ଆମେ ଅଶ୍ୱମେଧ ଯଜ୍ଞ କଥା ପଢ଼ିଛେ । ରାମଚନ୍ଦ୍ର ନିଜର ବୀରତ୍ୱ ପ୍ରକାଶ କରି ଦିଗ୍‌ବିଜୟୀ ହେବାର ପ୍ରୟାସ ସ୍ୱରୂପ ଅଶ୍ୱମେଧ ଯଜ୍ଞ କରାଇଥିଲେ । ଏହା ଫଳରେ ଲବକୁଶଠାବ ହେଲେ । ବାପ ପୁଅଙ୍କ ମିଳନ ହେଲା । ହେଲେ ଫଳ ସ୍ୱରୂପ ସୀତାଙ୍କୁ ପାତାଳଗାମୀ ହେବାକୁ ପଡ଼ିଲା । ରାମଚନ୍ଦ୍ର ସିନା ଗୋଟେ ଅଶ୍ୱମେଧ ଯଜ୍ଞ କରିଥିଲେ କିନ୍ତୁ ଯଯାତି କାଳେ ଦଶାଶ୍ୱମେଧ ଯଜ୍ଞ କରିଥିଲେ । ଏଥିପାଇଁ ଦଶଟି ଅଶ୍ୱକୁ ବଳିଦେବାକୁ ପଡ଼ିଥିଲା । ଏହାର ସ୍ମୃତି ସ୍ୱରୂପ ଆଜି ଯାଜପୁରଠାରେ ଦଶାଶ୍ୱମେଧ ବୈତରଣୀ ନଦୀ ତଟରେ ଅବସ୍ଥିତ ।

ଶୁଣାଯାଏ ତକ୍ଷକ ବଂଶ ଲୋପପାଇଁ ପରୀକ୍ଷିତ ସର୍ପବଂଶ ନିପାଦ ପାଇଁ ସର୍ପମେଧ ଯଜ୍ଞ କରିଥିଲେ । ଏହିପରି ଗୋଟିଏ ପରେ ଗୋଟିଏ ଉଦାହରଣରୁ ଆମେ ସ୍ଥିର ନିଶ୍ଚିତଯେ କୌଣସି କୌଣସି ଯଜ୍ଞରେ କୌଣସି ନା କୌଣସି ଜଙ୍ଗଲ ଜୀବର ବଳି ଚଢ଼ାଯାଏ । ତେବେ ଏ ଯୁଗରେ ମଧ୍ୟ ବେଳେ ବେଳେ ଯଜ୍ଞ କରାଯାଉଛି ବୃଷ୍ଟିପାତ ପାଇଁ । ଏବେ ତ ସରକାରୀ ପ୍ରୋତ୍ସାହନରେ ରାଜସ୍ଥାନରେ ଇନ୍ଦ୍ରଙ୍କୁ ତୁଷ୍ଟ କରିବାପାଇଁ ଇନ୍ଦ୍ରତୋଷଣ ଯଜ୍ଞ ଅନୁଷ୍ଠିତ ହୋଇଥିଲା । ବେଳେବେଳେ କୌଣସି କୌଣସି ରାଜନେତା କ୍ଷମତା ହାସଲ କରିବା ପାଇଁ ଅଥବା ସିଂହାସନ ରକ୍ଷା କରିବା ପାଇଁ ଶିଶୁବଳିର ଆଶ୍ରୟ ନେବା କଥା ଶୁଣାଯାଏ । ତାରା ତାରିଣୀ ପୀଠରେ ତାନ୍ତ୍ରିକ ଦ୍ୱାରା ଶିଶୁବଳିର ଲୋମହର୍ଷଣକାରୀ ତଥ୍ୟ ଏବେବି ଜନ ମାନସରୁ ଯାଇନାହିଁ ।

କେହି କେହି ନରମେଧ ଯଜ୍ଞ କରିବାର ଶୁଣାଯାଏ । ଏଥିରେ ଜଣେ ଅଧେ ବ୍ୟକ୍ତିଙ୍କୁ ଆତ୍ମବଳି ଦେବାକୁ ପଡ଼େ । ଯେପରି ଅଜିଗର୍ତ୍ତ କଥା । କିନ୍ତୁ ଗଣତନ୍ତ୍ର ଯୁଗରେ ଶହ ଶହ ଅଜିଗର୍ତ୍ତଙ୍କୁ ବଳିଦେବାକୁ ହେଉଛି ଗଣତାନ୍ତ୍ରିକର ସିଂହାସନ ରକ୍ଷାକରିବା ପାଇଁ । ଜାତି ଭିତ୍ତିକ ସଂରକ୍ଷଣ ନାମରେ ଅସଂଖ୍ୟ ମେଧା ଆଜି ବଳି ପଡୁଛନ୍ତି । ଖୁବ୍ ମେଧାସମ୍ପନ୍ନ ଉଚ୍ଚଜାତି ଜନ୍ମଜ ଯୁବକ/ଯୁବତୀ ବିଭିନ୍ନ ବୈଷୟିକ ହେଉ ବା ସାଧାରଣ ଶିକ୍ଷା ଅନୁଷ୍ଠାନ ହେଉ ସ୍ଥାନ ପାଉନଥିବା ବେଳେ ନିମ୍ନବର୍ଗର ସଂରକ୍ଷିତ ଅନୁସୂଚିତ ଜାତି ଆଉ ଜନଜାତିର ଯୁବକ/ଯୁବତୀର ସହଜରେ ଭଲ ଭଲ ଅନୁଷ୍ଠାନରେ ପାଠ ପଢ଼ିବାର ସୁଯୋଗ ପାଉଛନ୍ତି ।

ଏଇ ସୁଯୋଗ ଥରେ କେବଳ ଶିକ୍ଷାୟତନରେ ମିଳୁଥିଲେତ କଥା ସରନ୍ତା । ଏମାନେ ଶିକ୍ଷାୟତନରୁ ଉତ୍ତୀର୍ଣ୍ଣ ହେବାପରେ ଚାକିରୀ କ୍ଷେତ୍ରରେ ମଧ୍ୟ ଅନୁରୂପ ସୁବିଧା ସୁଯୋଗ ହାସଲ କରି ଚାଲିଛନ୍ତି । ଏଣୁ ମେଧାବୀ ଛାତ୍ର/ଛାତ୍ରୀ ବେକାର ହୋଇ ବୁଲୁଥିଲା

ବେଳେ ଅପେକ୍ଷାକୃତ କମ୍ ମେଧା ସମ୍ପନ୍ନ ଯୁବକ/ଯୁବତୀ କେବଳ ଜାତି ଆଳରେ ସବୁଯାକ ସୁଯୋଗ ମାରି ନେଉ ଅଛନ୍ତି । ଏହା କଣ ମେଧାଯଜ୍ଞନୁହେଁ !!

□

# ଚୋରା ପ୍ରୀତି ଓ ଗୁପ୍ତ ଭୋଟ

**ବ**ହୁ କବି ଓ କାବ୍ୟରସିକ ଚୋରା ପ୍ରୀତିକୁ ଖୁବ୍ ପ୍ରଶଂସା କରିଛନ୍ତି । ଚୋରା ପ୍ରୀତି ନଥିଲେ ରାଧା କୃଷ୍ଣ ଲୀଳା ହୁଏତ ସମ୍ଭବ ହୋଇ ନଥାନ୍ତା । ସ୍ୱକୀୟା ପ୍ରେମ ଆଉ ପରକ୍ରୀୟା ପ୍ରେମର ଗହନ ତତ୍ତ୍ୱ ଭିତରକୁ ଯିବାର ଆମର ଅଭିପ୍ରାୟ ନାହିଁ କିମ୍ବା ସେ ଶାସ୍ତ୍ର ପ୍ରବେଶରେ ଦକ୍ଷତା ନାହିଁ । ତେବେ ଆମେ କିଛି ଅନୁଭବ କରିଛୁ ଚୋରା ପ୍ରୀତିର ମାଦକତା । ଅବିବାହିତ ଅବସ୍ଥାରେ ଚୋର ପ୍ରୀତିରେ ଯେତିକି ଆନନ୍ଦ । ବିବାହିତ ପୁରୁଷର ପରସ୍ତ୍ରୀ ସହିତ ବାଚନିକ ବା ପ୍ଲୁଟୋନିକ୍ ପ୍ରେମରେ ଉଭୟ ଭୟ ଆଉ ଉନ୍ମାଦନା ମିଶ୍ରିତ ଥାଏ । ଠିକ୍ ପଣାରେ ଶର୍କରା ଓ ନାରିକେଳ ଚୂର୍ଣ୍ଣ ମିଶ୍ରିତ ପରି ।

ତେବେ ଚୋରା ପ୍ରୀତିକୁ ଆମେ ଗୁପ୍ତ ଭୋଟ୍ ସହିତ ଯୋଡ଼ିବାର କାରଣ ପାଠକେ ବୋଧେ ଅନୁମାନ କରିପାରି ନାହାନ୍ତି । ଆପଣ ଭାବନ୍ତୁ, ଭୋଟ ଦେବା ଦିନର ଆଉ ରାତିର ଜଣେ ପ୍ରାର୍ଥୀଙ୍କ ଏଜେଣ୍ଟଠାରୁ ଆପଣ କିଛି ଉପହାର ବା ଭୋଟ୍ ଦାନ ପାଇଁ ଗ୍ରହଣ କରିଛନ୍ତି । ଏବେତ ଭୋଟିଂ ମେସିନ୍ ଅଛି । ଯେଉଁ ପ୍ରାର୍ଥୀଙ୍କୁ ଭୋଟ୍ ଦେବ ତାହାରି କଡ଼ରେ ଥିବା ନୀଳ ରଙ୍ଗର ସୁଇଚ୍‌ଟିକୁ ଟିପିଦେବ ସିଂ ସିଂ କରି ଏକ ଲମ୍ବା ହୁଇସିଲ୍ ବାଜିବ । ମନେ କରନ୍ତୁ ଯାହାଠାରୁ ଆପଣ ଉପହାର ନେଇଛନ୍ତି ତାକୁ ଭୋଟ ନଦେଇ ଯଦି ଆଉ ଜଣଙ୍କୁ ଦେଇଥିବେ ତେବେ ସେତେବେଳେ ଆପଣଙ୍କ ଛାତିଟା ନିଶ୍ଚୟ ଧଡ଼ପଡ଼ ହେବ । କେହି ନ ଦେଖୁଥିଲେ ବି ଏହା ଗୁପ୍ତଭୋଟ ଜାଣିବା ସତ୍ତ୍ୱେ ମନାଟା ଶିରଶିରେଇ ଉଠିବ । ଠିକ୍ ଗୋରା ପ୍ରୀତିରେ ଧରା ପଡିଯିବା ଭୟରେ; ପ୍ରେମିକ ବା ପ୍ରେମିକର ଛାତି ଯେମିତି ଧଡ଼ପଡ଼ ହେବା ଆଉ ମନଟା ଶିରିଶିରି ହେବା ସଙ୍ଗେ ଏହା ଅବଶ୍ୟ ତୁଳନୀୟ ।

ମୋ ବିଚାରରେ ଏବେ ଏଇ ନିର୍ବାଚନ ରଣାଙ୍ଗନରେ ଆମ ପ୍ରାର୍ଥୀମାନେ ଜଣେ ଜଣେ ସେନାପତି ହେଲେ ଆମେ ସବୁ ସେନା କହିବା ଅପେକ୍ଷା ଏଇ ନିର୍ବାଚନ ରାସଲୀଳାରେ ନେତାମାନେ କୃଷ୍ଣ ଆମେ ଭୋଟଦାତା ମାନେ ଗୋପିକା ହେଲେ ବରଂ ଅଧିକ ସ୍ପୃହଣୀୟ । ନା କଣ କହୁଛନ୍ତି ଆଜ୍ଞା ।

□

# ଗେରସ୍ତ ପଛେ ମରୁ : ସଉତୁଣୀ ରାଣ୍ଡ ହେଉ

ଆମର ଗୋଟିଏ କଥା ଅଛି – ଗେରସ୍ତ ପଛେ ମରୁ ସଉତୁଣୀ ରାଣ୍ଡ ହେଉ । ଏହାର ଅନ୍ୟ ଏକ ବିକଳ୍ପ ରୁଢ଼ୀ ହେଲା ଘର ପୋଡ଼ିଗଲା ସତ, ମୂଷା କେଞ୍ଚେ ପାଇଲା ।

ଏଇ କଥାଟା ଏବେ ଆମ ଓଡ଼ିଶା କଂଗ୍ରେସ ମହଲରେ ଦେଖିବାକୁ ମିଳୁଛି । ଓଡ଼ିଶାରୁ କଂଗ୍ରେସ ଦିଲ୍ଲୀକୁ ଦୁଇଜଣ ପଠାଇ ପାରିଥିବା ବେଳେ ଭୁବନେଶ୍ୱର ବିଧାନସଭା ଗୃହରେ ଢୋକେଇବା ପାଇଁ ମଧ୍ୟ କେତେ ଜଣଙ୍କୁ ପଠାଇପାରିଛି । ତେବେ ଓଡ଼ିଶା କଥା ଛାଡ଼ । ଏ ରାଜ୍ୟରେ ଖାଦ୍ୟ ବସ୍ତ୍ର ବାସଗୃହର ଆଦୌ ସମସ୍ୟା ନାହିଁ ଆମର ଶସ୍ୟ କ୍ଷେତ୍ରରୁ ଧାନ ଏତେ ଉତ୍ପାଦିତ ହେଉଛି ଯେ, କିଣିବା ପାଇଁ କେହି ନାହିଁ । ଚାଷୀର ଅମାରରେ ତାହା ଖତ ହେଉଛି । ଏଠାରେ ଲୋକମାନେ ଆଉ ତୁଳା ବସ୍ତ୍ର ପରିଧାନ କରୁନାହାନ୍ତି କେବଳ ସିନ୍ଥେଟିକ୍ ଉପରେ ମାତ୍ର । ସେହିପରି ଇନ୍ଦିରା ଆବାସ ମାଳ ମାଳ । ଏଣୁ ଏଠାକୁ ୩୦ ଜଣ ବିଧାନ ସଭାକୁ ଯାଆନ୍ତୁ ବା ୩ ଜଣ ଯାଆନ୍ତୁ କିଛି ଯାଏ ଆସେ ନାହିଁ ।

ମାତ୍ର ଇନ୍ଦ୍ରପ୍ରସ୍ଥ ଅର୍ଥାତ୍ ଦିଲ୍ଲୀକୁ ଦି ଜଣରୁ ଅଧିକ ମାନେ ପାଞ୍ଚ/ଛଅ ଜଣ ଯାଇଥିଲେ ଟିକେ ଆଖି ଦୃଶିଆ ହୋଇ ଥାଆନ୍ତା । ତଥାପି ଗୋଟେ କଥା ମନକୁ ବାରବାର ଆସୁଛି କେତେଜଣ ଏମ୍.ପି. ନଥାଇ, କେତେ ଜଣ ପାର୍ଲାମେଣ୍ଟ ନିର୍ବାଚନରେ ହାରିଯାଇ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଛନ୍ତି । ଅଥଚ ଓଡ଼ିଶାର ରାଜ୍ୟ ସଭାରେ ଚାରି/ପାଞ୍ଚ ଜଣ ଅଛନ୍ତି । ପାର୍ଲାମେଣ୍ଟକୁ ଦୁଇଜଣ ମାତ୍ର ନିର୍ବାଚିତ ହେଲେ । ଅଥଚ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ଆମ ଓଡ଼ିଶା କଙ୍କଡ଼ା ଜଣେ ବି ସ୍ଥାନ ପାଇଲେ ନାହିଁ । ନପାଇଲେ ନାହିଁ ଦୁଃଖ ନାହିଁ । ଦୁଃଖ କିନ୍ତୁ ଏଇ ଖବର ଶୁଣି ଆମେ ଓଡ଼ିଆଏ ଏଠାରେ ମାନେ ଏଇ ଭୁବନେଶ୍ୱରରେ ଏହି ଅବସରରେ ମିଠାଇ ବଣ୍ଟନ କରିବା ଆଉ ଆତସ-ବାଜି ଫୁଟାଇବାରେ ମସଗୁଲ ରହିଲେ ।

ଏହି ଆନନ୍ଦ କେଉଁ କାରଣରୁ ? ଆମେ ଅନୁସନ୍ଧାନରୁ ଜାଣିଲୁ ଯେ, ଶୁଣା ଯାଇଥିବା ଗମାଙ୍ଗ କିମ୍ବା ରାୟ କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଥିଲେ । ଏହି ଶୁଣାଶୁଣିରେ ଆମ କଙ୍କଡ଼ାମାନେ ମନଦୁଃଖରେ ଥିଲେ । ଯେମିତି ଜଣାଗଲା କେହି ଓଡ଼ିଆ ବୀର ଏଥର ମନ୍ତ୍ରିମଣ୍ଡଳରେ ଯୋଗ ଦେଇନାହାନ୍ତି ଏମାନେ ଏଣେ ଖୁସିରେ ମିଠେଇ ବାଣ୍ଟିଲେ ବାଣ ଫୁଟାଇଲେ । ଅଥଚ ଲୋକ ଦେଖାଣିଆ କହୁଛନ୍ତି – ରାଜ୍ୟରେ ଘୋର ନୈରାଶ୍ୟ ଖେଳି ଯାଇଛି । ଧନ୍ୟ କହିବା ଆମ ଓଡ଼ିଆ କଙ୍କଡ଼ାକୁ । ଗୋଡ଼ ଟଣାଟଣି ହୋଇ ଆମେ ତ ତଳକୁ ଯାଉଛେ । ତଥାପି ଆମର ଚେତା ପଶୁନି । ସେଇ ଗୋଟିଏ କଥା ମନେ ରଖିଛେ – ଘଇତା ପଛେ ମରୁ, ସଉତୁଣୀ ରାଣ୍ଡ ହେଉ ।

□

# ତୁ ତ ମୁତୁରି ମୁଁ ତ ମୁତୁରି

ତୁ ତ ମୁତୁରି ମୁଁ ତ ମୁତୁରି – ଆଜ୍ଞା ଏ କଥା ମୁଁ କହୁନାହିଁ । ଏ କଥାଟା ଦୁଇଜଣ ବିଶିଷ୍ଟ ନେତା କୁହା କୁହି ହେଉଥିବାର ମୁଁ ଦୂରରୁ ଟିକେ କାନେଇ ଶୁଣିନେଇଥିଲି ।

ନେତା ଦୁଇଜଣଙ୍କୁ ଆପଣ ଭାବି ନେଇ ପାରନ୍ତି – ଜଣେ ଶାସକ ଦଳର ନେତା ଆଉ ଜଣେ ବିରୋଧି ଦଳର ନେତା ।

ନିର୍ବାଚନ ପାଲା ସରିଗଲା । ଭୋଟ୍ ଫଳାଫଳ ବି ମିଳିଗଲା । ଗଣତନ୍ତ୍ର ଶାସନରେ ଶାସକ ଦଳ ଆଉ ବିରୋଧୀ ଦଳ ତ ରହିବେ । ଏଣୁ ଦୁଇ ଦଳ ଅର୍ଥାତ୍ ଶାସକ ଦଳ ଆଉ ବିରୋଧୀଦଳ ବସି ନିଜ ନିଜର ନେତା ନିର୍ବାଚନ କରିସାରିଛନ୍ତି ।

ସେଇ ଦୁଇ ନେତାଙ୍କ କଥାବାର୍ତ୍ତାର ସାରାଂଶ ଏଠାରେ ଅବିକଳ ଦିଆଗଲା ।

ସରକାରୀ ନେତା – ଦେଖ ଭାଇ ! ଭୋଟ୍ ସରିଲା, ମୁଁ ସରକାରୀ ଦଳ ନେତା ଆଉ ତୁମେ ବିରୋଧୀଦଳ ନେତା । ବିଧାନ ସଭାରେ ଆମେ ଲୋକଙ୍କୁ ଭଣ୍ଡେଇବା ପାଇଁ ଲାଗିପାରନ୍ତି । ମୁଁ ଯେଉଁଟା କହିବି ତୁମେ ମାନିବ ନାହିଁ, ତୁମେ ଯେଉଁଟା କହିବ ମୁଁ ମାନିବି ନାହିଁ ।

ବିରୋଧୀଦଳ ନେତା– ହଁ, ଏମିତି ଆମେ ପରସ୍ପରର ବନ୍ଧୁ । ଏକା ଜାତି, ପୁଣି ତୁମ ଘର ଆମ ଘର ଭିତରେ ଚାରି/ପାଞ୍ଚ କିଲୋମିଟର ଦୂରତା ।

ସରକାରୀଦଳ ନେତା– ଏଣେ ରାଜଧାନୀରେ ବି ତୁମ ସରକାରୀ ବଙ୍ଗଳାଠୁଁ ମୋ ସରକାରୀ ବଙ୍ଗଳା କେଇ ମିଟର ଦୂରରେ ପୁଣି ରାଜରାସ୍ତାରେ ଏପଟ ସେପଟ । ତେବେ ମୁଁ ଭାବୁଛି ଆମେ ପରସ୍ପରର ହାତ ମିଳେଇ ଦେଲେ କଥା ସରିଲା ।

ବିରୋଧୀଦଳ ନେତା– ହଁ ନିର୍ବାଚନ ପୂର୍ବରୁ ଆମେ ଯେଉଁ କଥା ହୋଇଥିଲେ ଏବେ ଆସେମ୍ବ୍ଲି ବସିଲେ ପ୍ରଥମ ଅଧିବେଶନରେ ତାକୁ ବିଲ୍ ଆକାରାରେ ନେଇଆସିବା ।

ସରକାରୀ ଦଳ ନେତା– ହଁ ମୋର ଠିକ୍ ମନେଅଛି । ଆମ ସଭ୍ୟ ସଭ୍ୟାମାନଙ୍କର ଦରମାକୁ ତିନିଗୁଣ ବଢ଼ାଇଦେବା । ଏହାଛଡ଼ା ଗସ୍ତଖର୍ଚ୍ଚ, ଦୈନିକ ଭତ୍ତା (ଆସେମ୍ବ୍ଲି ଚାଲୁଥିବା ବେଳେ) ଅଢ଼େଇଗୁଣ ବଢ଼ାଇଦେବା ।

ବିରୋଧୀ ଦଳ ନେତା– ଆଉ ବିଦେଶ ଯିବା କଥାଟା ?

ସରକାରୀ ଦଳନେତା– ହଁ ସେ ବ୍ୟବସ୍ଥା କରିଦେବା । ପ୍ରତ୍ୟେକ ଏମ୍.ଏଲ.ଏ ପର୍ଯ୍ୟାୟକ୍ରମେ ପାଞ୍ଚବର୍ଷ ଭିତରେ ଅନ୍ତତଃ ଥରେ ଦୁଇଥର ବିଦେଶ ଯାତ୍ରାର ସୁବିଧା ପାଇବେ ! ଖାଲି ସେତିକି ନୁହେଁ– ସେମାନେ ସପରିବାର ମଧ୍ୟ ଯାଇପାରିବେ । ସରକାର ସମସ୍ତ ଖର୍ଚ୍ଚ ବହନ କରିବେ ।

ବିରୋଧୀ ଦଳ ନେତା– ହଁ, ଏତକ କରିଦେଲେ ମୁଁ ଭାବୁଛି ପାଞ୍ଚ ବର୍ଷ ଭିତରେ ଆଉ ଆସେମ୍ବ୍ଲି ଭାଙ୍ଗିବାର ସମ୍ଭାବନା ନାହିଁ । ସମସ୍ତେ ହସଖୁସିରେ ପାଞ୍ଚବର୍ଷ କଟାଇଦେବା । ଦରକାର ପଡ଼ିଲେ ଆଉ ବର୍ଷେ ଏକ୍ସଟେନ୍‌ସନ୍ କରିଦେବା ।

ସରକାରୀ ଦଳ ନେତା– ମୁଁ ବି ଏଥିରେ ଏକମତ !

ବିରୋଧୀଦଳ ନେତା– ତେବେ ଜନସାଧାରଣ ଟିକେ ବିରକ୍ତ ହୋଇପାରନ୍ତି ।

ସରକାରୀ ଦଳ ନେତା– ଆରେ ମାର ଗୁଲି ସେ ଜନସାଧାରଣଙ୍କୁ । ତେବେ ଏଇ ସରକାରୀ କର୍ମଚାରୀଗୁଡ଼ା ଧର୍ମଘଟର ଧମକ ଦେଇପାରନ୍ତି । ସେତେବେଳେ ଦେଖିବା । ତାଙ୍କର ମହଙ୍ଗା ଭତ୍ତାକୁ ୨/୩ କିସ୍ତି ଦେଇ ଜି.ପି.ଏଫ୍‌ରେ ରଖିବାର ବ୍ୟବସ୍ଥା କରି ଗୋଟେ ଚାଲ ଖେଳିଦେବା ।

ବିରୋଧୀଦଳ ନେତା– ଆଉ ତାଙ୍କ ସଂଗଠନର ନେତାଙ୍କୁ କୌଣସି ଏକ ପ୍ରୋଜେକ୍ଟରେ ଟିକେ ବିଦେଶ ବୁଲାଇ ଆଣିବାର ବ୍ୟବସ୍ଥା କରିଦେଲେବି ଭଲ ହେବ ।

ସରକାରୀଦଳ ନେତା– ଆପଣ ଖାଲି ହାତ ମିଳାନ୍ତୁନା ମୁଁ ସବୁ ସମ୍ଭାଳି ନେବି !

ଦୁଇନେତାଙ୍କ କଥା ଶୁଣି ଆମେ ଆଉ ସମ୍ଭାଳି ରହିପାରିଲିନି । ପାଟିରୁ ଜୋରରେ ବାହାରି ପଡ଼ିଲା – ଗଣତନ୍ତ୍ର ଜିନ୍ଦାବାଦ !

ଦୁଇନେତା କଟମଟ ହୋଇ ମୋତେ ଚାହିଁଲେ । ତାଙ୍କ ଭିତରୁ କିଏ କହିଲା – ବେ ଏଇଟା ବିଦେଶୀ ଗୁପ୍ତଚରଟାଏ ବୋଧେ । ପୋଲିସ୍ କୁଆଡ଼େ ଗଲା ? ଏଟାକୁ ଧରି ଜେଲରେ ଠୁଙ୍କିଦେଉ ।

ମୁଁ ପ୍ରାଣ ବିକଳରେ ପଳାଇ ଆସିଲି । ଗୋଟେ ଗଳି ବାଟରେ । ଧାଇଁଛି... ଧାଇଁଛି.... ପଛରୁ ପୋଲିସ୍ ହ୍ୱିସିଲ୍ ବାଜୁଥିଲା ।

# ନୂଆ ଅଲମ୍ପିକ୍

ଅଲମ୍ପିକ୍ ଖେଳ ପ୍ରତି ଚାରି ବର୍ଷରେ ଥରେ ହୋଇଥାଏ । ଆମେ ଭାରତୀୟ ଗୋଟେ ନୂଆ ଅଲମ୍ପିକ୍ ଖେଳ କରୁ ପ୍ରତି ପାଞ୍ଚବର୍ଷରେ ଥରେ । ନିୟମତଃ ପାଞ୍ଚବର୍ଷରେ ହେବାପାଇଁ ଆମେ ଆଇନ୍ ପ୍ରଣୟନ କରିଛୁ । କିନ୍ତୁ ଆମ ସ୍ୱାର୍ଥର ଲାଭ ପାଇଁ ହିସାବ ନିକାଶ କରି ଆମେ ପାଞ୍ଚବର୍ଷ ଆଗରୁ କିମ୍ବା ପାଞ୍ଚବର୍ଷ ପରେ ଏଇ ଅଲମ୍ପିକ୍ କରିଥାଉ ।

ଅଲମ୍ପିକ୍ ଇତିହାସ ଖେଳାଇଲେ ଆମେ ହକିରେ କେତୋଟି ସ୍ୱର୍ଣ୍ଣ ଛଡ଼ା ଅନ୍ୟାନ୍ୟ ଖେଳରେ ଦୁଇ ତିନିଗୋଟି ବ୍ରୋଞ୍ଜ ପଦକ ପାଇଛନ୍ତି । ଏଇବର୍ଷ ଏଥେନ୍ସ ଅଲମ୍ପିକ୍ ଖେଳରେ ଆମେ ଗୋଟିଏ ରୌପ୍ୟ ପଦକ ରାଇଫଲ ସୁଟିଂରେ ପାଇଛେ । ଆମର ଭାରତ ଗୋଟିଏ ବିରାଟ ଦେଶ । ଦେଢ଼ଶହ କୋଟିରୁ ଅଧିକ ଲୋକ । ହେଲେ ବିଶ୍ୱ କ୍ରିଡ଼ା ଜଗତରେ ଆମେ ପାଇଲେ ଗୋଟିଏ ଖେଳାଳୀ ରାଠୋର ବାବୁଙ୍କୁ ।

ତେବେ ଦୁଃଖ ନାହିଁ । ଆମେ ସାଧାରଣ କ୍ରୀଡ଼ାରେ ସିନା ପଛୁଆ । ହେଲେ ରାଜନୀତି ଖେଳରେ ଆମେ ସାରା ପୃଥିବୀ ଭିତରେ ଆଗୁଆ । ଆମ ଗଣତନ୍ତ୍ର ସାରା ବିଶ୍ୱରେ ସବୁଠାରୁ ବଡ଼ । ଏଠାରେ ଏଇ ଗଣତନ୍ତ୍ରୀୟ ରାଜନୈତିକ ଅଲମ୍ପିକ୍‌ରେ ଆମେ ସବୁଠାରୁ ଆଗୁଆ ।

ପ୍ରଥମେ ନିଆଯାଉ ଦଳ ବଦଳ କ୍ରୀଡ଼ା । ଏଇ ଦଳ ବଦଳରେ ଆୟାରାମ ଗୟାରାମ ପଦକ ତାଲିକାରେ ଆମେ ପ୍ରଥମ ସ୍ଥାନ ଅଧିକାର କରିଛେ । ଏଇ ଦେଖୁନାହାନ୍ତି ଅରୁଣାଞ୍ଚଳର ଆପାଂ ଜପାଂ ଗପାଂ କଥା । ଚଳଚଞ୍ଚଳ ହରଲିକ୍ସ ପରି । ତାଙ୍କର ମନ କେଡ଼େ ଚଳଚଞ୍ଚଳ । ପ୍ରଥମେ ଥିଲେ କଂଗ୍ରେସରେ । ପୁଣି ଦେଖିଲେ କଂଗ୍ରେସର ଅବସ୍ଥା ଏତେ ଭଲ ନାହିଁ । ଏଣୁ ଚାଲିଲେ ବି.ଜେ.ପି. କୁ । ଏବେ ବି.ଜେ.ପି. ର ଅବସ୍ଥା ଭଲ ନାହିଁ ଏଣୁ ପୁଣି ଚାଲିଲେ କଂଗ୍ରେସକୁ । ମାଆ ସୋନିଆଙ୍କ ପାଦତଳେ ନିଜକୁ ସମର୍ପଣ କରିଦେଲେ ନିଜକୁ ।

ସେହିପରି ସମ୍ବିଧାନ ସଂଶୋଧନ ଖେଳରେ ଆମେବି ସର୍ବ ପ୍ରଥମ । ଯେତେବେଳେ ଯେଉଁ କଥା ଦରକାର ପଡ଼ିବ ଆମ,ମଙ୍ଗଳ ପାଇଁ ଆମର କ୍ଷମତା ବଳରେ ଆମେ ବଦଳାଇ ଚାଲିବା ଧାରା–ଉପଧାରା । ଏଇ ଯେମିତି ଜଣେ ପୋଟା ଲାଗୁ କଲେ ନିଜ ସ୍ୱାର୍ଥପାଇଁ, ଆଉ ଜଣେ ପୋଟା ଉଠାଇଦେଲେ ନିଜ ମଙ୍ଗଳ ପାଇଁ । ସାକ୍ଷୀ କେବଳ ସର୍ବସାଧାରଣ । ବିଶ୍ୱ ଦରବାରରେ ଆମେ ସବୁଠାରୁ ବେଶୀ ପ୍ରଶଂସିତ ଏଥିପାଇଁ ଯେ, ଆମେ ଦାଗୀମାନଙ୍କୁ ପାର୍ଲ୍ୟାମେଣ୍ଟ ଆସେମ୍ବ୍ଲିକୁ ପଠାଇ ଦୋଷମୁକ୍ତ କରିଥାଉ । ଆଉ ରହିଲା ସ୍କାମ୍ କଥା । ସ୍କାମ୍ ଅଲମ୍ପିକ୍‌ରେ ଆମେ ସ୍ୱର୍ଣ୍ଣପଦକରେ ସନ୍ତୁଷ୍ଟ ନୋହୁ ବରଂ ହୀରକ ପଦପାଇଁ ଦାବୀଦାର ।

□

# ବାଃ ବାଃ ମଧ୍ୟାହ୍ନ ଭୋଜନ

ଆମେ ଏଠି ଆମ ନିଜର ମଧ୍ୟାହ୍ନ ଭୋଜନ ଅଥବା ବଡ଼ବଡ଼ିଆଙ୍କ ଲଞ୍ଚ ବା ଡିନର କଥା କହୁନାହୁଁ । ପ୍ରାଥମିକ ବିଦ୍ୟାଳୟରେ ଚାଲୁଥିବା ମଧ୍ୟାହ୍ନ ଭୋଜନ ବିଷୟରେ ଦୁଇ ପଦ କହିବା ଉଚିତ୍ ମନେ କରୁଛୁ ।

୧୫-୦୧-୦୫ରୁ ମଧ୍ୟାହ୍ନ ଭୋଜନ ଖର୍ଚ୍ଚରେ ୫୦ ପଇସା ବୃଦ୍ଧି କରାଯିବା ଫଳରେ ମୂଳ ହିସାବ ହେଲା ମାଗଣାରେ ଚାଉଳ ବାଦେ ଡାଲି ପନିପରିବା ଖାଇବା ତେଲ ରୋଷେଇ ଇନ୍ଧନ ପରିବାରିକ ଖର୍ଚ୍ଚ ହିତାଧିକାରୀ ପିଛା ୫୩ ପଇସାରୁ ବଢ଼ି ୧୦୩ ପଇସା ହେଲା । ଅବଶ୍ୟ ଏଯାବତ୍ ଏଇ ନୂତନ ହିସାବ ଅନୁସାରେ ଅନୁଦାନ ଆସି ବିଦ୍ୟାଳୟରେ ପହଞ୍ଚିଛି କି ନା ଆମକୁ ଜଣାନାହିଁ । ତେବେ ଏବେବି ଇନ୍ଧନ ବାବଦକୁ ଭରଣ କରିବା ପାଇଁ ମାଗଣା ଚାଉଳର କିଛି କିଛି ବିକ୍ରୀ କରି ଦେବାର କାଁ ଭାଁ ଶୁଣାଯାଏ ।

ଅବଶ୍ୟ ଶିକ୍ଷକମାନେ ନିଶ୍ଚିତଭାବେ ଏହି ଯୋଜନାକୁ ଆଗେଇ ନେବା ପାଇଁ ଅଣ୍ଟାଭିଡ଼ିଥାନ୍ତି । କିନ୍ତୁ ଠାଏ ଠାଏ ଅସାଧୁ ଗ୍ରାମବାସୀମାନଙ୍କ ସଙ୍ଗେ ଅସାଧୁ ଶିକ୍ଷକ ହାତ ମିଳାଇ ଚାଉଳକୁ ଚଳୁ କରିବାରେ ସମ୍ଭାବନା ମଧ୍ୟ ଆଖିରେ ପଡ଼ିଥାଏ ।

ତେବେ ଏଇ ମଧ୍ୟାହ୍ନ ଭୋଜନ ଯୋଜନା ଅନୁସାରେ ବିଦ୍ୟାଳୟକୁ ଛାତ୍ରଛାତ୍ରୀ ଅବଶ୍ୟ ଆସୁଛନ୍ତି ହେଲେ ପାଠପଢ଼ା; ତାହା ଗଣେଶ ସରସ୍ୱତୀଙ୍କୁ ଜଣା । କାରଣ ଗୋଟିଏ ବିଦ୍ୟାଳୟକୁ ଗଲେ ଜଣାଯାଏ ତିନିଜଣ ଶିକ୍ଷକ ଭିତରୁ ଜଣେ ନିଜ କାମରେ ବ୍ୟସ୍ତ, ଅନ୍ୟଜଣେ ଶିକ୍ଷକ ସଂଘ କାମରେ ବ୍ୟସ୍ତ ଏବଂ ଅନ୍ୟଜଣେ ମଧ୍ୟାହ୍ନ ଭୋଜନ ଯୋଗାଡ଼ରେ ବ୍ୟସ୍ତ । ଏଣୁ ପିଲାଏ ପାଠ ନପଢ଼ି କେବଳ ଥାଳି ତାଟିଆ ସଜାଡ଼ିବାରେ ବ୍ୟସ୍ତ ।

ଏଣୁ ଆମେ କହିବାକୁ ବାଧ୍ୟ ହେଉଛୁ –

ଆସିଲା ଆସିଲା ସାର୍ ମଧ୍ୟାହ୍ନ ଭୋଜନ
ମାଷ୍ଟର ଚାଲିଲେ ଖୋଜିବାକୁ ଯେ ଇନ୍ଧନ
ଛାତ୍ରଛାତ୍ରୀ କଲେ ଥାଳି ଗିନା ଝଣ ଝଣ
ପାଠପଢ଼ା ଶବଦରେ ଫାଟିଯାଏ କାନ ।

□

# ସେକ୍ସ ସ୍କାଣ୍ଡାଲ

ଏବେ ଏବେ ଖବର କାଗଜ ପୃଷ୍ଠାରେ କେଉଁଠି ନା କେଉଁଠି ସେକ୍ସ ସ୍କାଣ୍ଡାଲ ଉପରେ ଟୀକା ଟୀପ୍ପଣୀ ନିଶ୍ଚୟ ଆଖିରେ ପଡୁଛି । ଏହି ସବୁ ଘଟଣା ପଢ଼ିବାକୁ ସତେ ଅବା ଆଖିଟା ବେଶ୍ ଚଳଚଞ୍ଚଳ ହୋଇପଡୁଛି ।

ତେବେ ଏଇ ସେକ୍ସ ସ୍କାଣ୍ଡାଲ ଶବ୍ଦ ସହ ଆଉ କେତୋଟି ଶବ୍‌ଦ ମଧ୍ୟ ଯୋଗ ହେଉଛି ଯଥା – ରାଣୀ ମହୁମାଛି, ମୋବାଇଲ୍ ଫୋନ୍, ଡାଏରୀ, ଡାଏରୀରେ କିଛି ପ୍ରତିଷ୍ଠିତ ବ୍ୟକ୍ତି, ଅଫିସର, ରାଜନେତାଙ୍କ ନାମ ଓ ଠିକଣା ତଥା ଫୋନ୍ ନମ୍ବର ।

ସବୁଠୁ ଆଶ୍ଚର୍ଯ୍ୟ ଲାଗେ ଗୋଟିଏ କଥାକୁ । ପୋଲିସ୍ ଅନୁସନ୍ଧାନ ଜାରି ରହେ । ଧରା ପଡ଼ନ୍ତି ରାଣୀ ମହୁମାଛି । କେତେକ ଦେହଜୀବୀ । ଆଉ ଅସଂଯତ ଅବସ୍ଥାରେ ସାଧାରଣ ସ୍ତରର ଯୁବକ ଯୁବତୀ । ମାତ୍ର ଡାଏରୀ ଜଗତରେ ଯେଉଁ ଅଫିସର ଓ ରାଜନେତାଙ୍କ ନାମ ଠିକଣା ଫୋନ୍ ନମ୍ବର ମିଳିଛି ବୋଲି ପୋଲିସ୍ ବୟାନ ଦିଏ । ସେମାନେ ଆଉ କେହି ଧରାପଡ଼ନ୍ତି ନାହିଁ । ପୋଲିସ୍‌କୁ ପଚାରିଲେ ଉତ୍ତର ମିଳେ – ଅନୁସନ୍ଧାନ ଜାରି ରହିଛି ।

ଏଣୁ ଏଇ ସେକ୍ସ ସ୍କାଣ୍ଡାଲକୁ ଆମେ ଆମ ନିଜ ବିଚାରରେ ତିନୋଟି ଶ୍ରେଣୀରେ ବିଭକ୍ତ କରିଛୁ । ପ୍ରଥମ ସେକ୍ସ ସ୍କାଣ୍ଡାଲଟି ହେଉଛି ସାଧାରଣ ସ୍ତରରେ । ଏଇ ଧରଣର ସେକ୍ସ ସ୍କାଣ୍ଡାଲରେ ସାଧାରଣ ସ୍ତରର ଲୋକେ ସଂପୃକ୍ତ । ଏଥିରେ ଖଟିଖିଆ ଶ୍ରମିକ ଠାରୁ ଆରମ୍ଭ କରି ସ୍ୱଳ୍ପ ରୋଜଗାରକ୍ଷମ ବ୍ୟକ୍ତି ସଂପୃକ୍ତ । ଏମାନେ ମଧ୍ୟ କମ୍ ଦାମୀକିଆ ଦେହଜୀବୀ ସହ ଯୌନ ସଂପର୍କ ରଖିଥାନ୍ତି । ଏମାନେ ପୋଲିସ୍‌ର ନାଲିଆଖି ତଳେ ରହନ୍ତି ଏବଂ ସହଜରେ ଧରାପଡ଼ନ୍ତି ।

୨ୟ ଶ୍ରେଣୀକୁ ଆମେ ସୁପର ସେକ୍ସ ସ୍କାଣ୍ଡାଲ ନାମରେ ନାମିତ କରିବା । ଏହି ଶ୍ରେଣୀର ଉଚ୍ଚ ବର୍ଗର ବ୍ୟକ୍ତି, ଉଚ୍ଚ ସ୍ତରର ବ୍ୟକ୍ତି ସଂପୃକ୍ତ । ଏମାନେ ଉଚ୍ଚ ସ୍ତରର ସୁନ୍ଦରୀ ଦେହଜୀବିଙ୍କ ସହ ମୋଟା ଅଙ୍କର ଅର୍ଥ ଦେଇ ସୁପର ଯୌନ ସମ୍ପର୍କ ରହନ୍ତି । ଏମାନଙ୍କର ପୋଲିସ୍‌କୁ ଭୟ ନଥାଏ ׀ ମାତ୍ର ଧରାପଡ଼ିଲେ ନିଜର ପଦବଦବୀ ହରେଇବା କିମ୍ବା ସାମାଜିକ ପ୍ରତିଷ୍ଠା ହରାଇବାର ଭୟ ଥାଏ ।

୩ୟ ଶ୍ରେଣୀକୁ ଆମେ ସୁପର ଡୁପର ସେକ୍ସ ସ୍କାଣ୍ଡାଲ କହିବା । ଏହି ଶ୍ରେଣୀୟ ସ୍କାଣ୍ଡାଲରେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ବ୍ୟକ୍ତି, ବରିଷ୍ଠ ରାଜନେତା, ଅଭିନେତା, କ୍ରିଡ଼ାବିତ୍, ଚିତ୍ରକର ଆଦିଙ୍କୁ ଜଡ଼ିତ ହେବା ଦେଖାଯାଏ । ଏମାନଙ୍କ ଦୈନ ସମ୍ପର୍କ ସମସ୍ତରେ ଆନ୍ତର୍ଜାତିକ

ଖ୍ୟାତି ସମ୍ପନ୍ନ ସୁନ୍ଦରୀମାନଙ୍କ ସହ ଯୋଡ଼ାଯାଏ । ଏମାନଙ୍କର ଭୟ ନା ଥାଏ ପୋଲିସ୍‌କୁ ନା ଥାଏ ପଦପଦବୀକୁ । କାରଣ ଏମାନଙ୍କ ପାଖକୁ ପୋଲିସ୍ ଯାଇପାରେନା କିମ୍ବା ଏମାନଙ୍କ ପଦପଦବୀ ଯାଏନା ।

ତେବେ ଭଗବାନ କଣ ଏମାନଙ୍କୁ ଭୟ ଦେଖାଇ ଭଲ ବାଟକୁ ଆଣନ୍ତେନି ।

□

# ବିଉଟିପାର୍ଲର ଓ ହିଂଜିଡ଼ା

ଏବେ ସହରମାନଙ୍କରେ ରାସ୍ତାରେ ଯାଉ ଯାଉ ଅନେକ ଗୋଡ଼ିଏ ବିଓଟିପାର୍ଲର ଆଖିରେ ପଡ଼େ । ଅଧିକାଂଶ ବିଉଟିପାର୍ଲର ମହିଳାମାନଙ୍କ ପାଇଁ ଉଦ୍ଦିଷ୍ଟ ହେଲେହେଁ କାଁ ଭାଁ ପୁରୁଷମାନଙ୍କ ପାଇଁ ମଧ୍ୟ ବିଉଟିପାର୍ଲର ରହିଛି । ତେବେ ଏହି ବିଉଟିପାର୍ଲର ଗୁଡ଼ିକ ମହିଳାମାନଙ୍କ କେଶ ମୁଖ ଆଦିର ସୌନ୍ଦର୍ଯ୍ୟ ବୃଦ୍ଧିର ବେଶ୍ ସହାୟକ ହୋଇଥାନ୍ତି । କେଉଁ ମହିଳାକୁ କେଉଁ ପ୍ରକାରେ କେଶ ସଜ୍ଜା ଭଲ ଲାଗିବ ! କେଉଁ ମହିଳାଙ୍କ ମୁହଁରେ ବିଉଟି ସ୍ପଟ କେଉଁଠି ଦେଲେ ଭଲ ଲାଗିବ ଏସବୁ କଥା ବିଉଟିପାର୍ଲରରେ ଥିବା ପ୍ରସାଧନକାରୀଙ୍କୁ ବେଶ୍ ଜଣା ।

ତେବେ ଆମ ମନକୁ ବେଳେବେଳେ ଆସେ ଅନେକ ମହିଳା ଲକ୍ଷ୍ମୀବତୀ ବଧୂ ସାଜିଲେ ଯେତେଭଲ ଲାଗନ୍ତେ ଏହି ପାର୍ଲର ଗୁଡ଼ିକ ଘନ କୁନ୍ତଳାକୁ କ୍ଷୁଦ୍ର କେଶୀ କରି ବଡ଼ ବିକୃତ କରିଦିଅନ୍ତି । ଅର୍ଥାତ୍ ନାରୀ ସୁଲଭା ଏଇ କେଶ କର୍ତ୍ତନରେ ଦୂର ହୋଇ ରଣଶ୍ରୀ ଚଣ୍ଡୀ ବା ଅଣ୍ଡିରା ଚଣ୍ଡୀ ଭୂମିକାକୁ ନେଇ ଆସେ ।

ଏମାନଙ୍କୁ ଏଇ ଅବସ୍ଥାରେ ଦେଖିଲେ ଛାଆଁକୁ ଛାଆଁ ମନକୁ ଚାଲିଆସେ ହିଂଜିଡ଼ା ମାନଙ୍କ କଥା । ଏମାନେ ଦିନରେ ବସନ୍ତ ରାତିରେ ବାସନ୍ତୀ । ଦିନରେ ସତିଆ ରାତିରେ ସତ୍ତୀ । ସତ ! ହେଲେ ଏମାନେ ବିଉଟିପାର୍ଲର ମହିଳାମାନଙ୍କ ପରି ଦାମ୍ପତ୍ୟ ଜୀବନ ସୁଖ ଲାଭ କରୁନଥିବାରୁ ପାରିବାରିକ କଳି ବା ଦାମ୍ପତ୍ୟ ମନୋମାଳିନ୍ୟରେ ଧାର ଧାରନ୍ତି ନାହିଁ । ଅନ୍ୟପକ୍ଷରେ ଏମାନେ ସାମାଜିକ ନ୍ୟାୟଠାରୁ ବହୁ ଦୂରରେ ରହିଥାନ୍ତି । ଏଥିପାଇଁ ଆଜି ସେମାନେ ମଧ୍ୟ ସଂଘବଦ୍ଧ ହୋଇ ସମାଜିକ ନ୍ୟାୟ ଓ ସାମଜିକ ଅଧିକାର ପାଇଁ ସଂଗ୍ରାମ ଚଳାଇବା ଆରମ୍ଭ କରିଛନ୍ତି ।

ତେବେ ଆମେ ଭାବୁଛେ ବିଉଟିପାର୍ଲରରୁ ସଦ୍ୟଫେରନ୍ତା ପୁରୁଷବେଶୀ ମହିଳା ଏବଂ ଦୀର୍ଘବେଣୀ ହିଂଜିଡ଼ା ଭିତରେ ଆନାଟୋମିକ୍ ପ୍ରଭେଦ ସିନା ରହିଛି । କିନ୍ତୁ ବାହ୍ୟ ଜଗତରୁ ଉଭୟଙ୍କୁ ଦର୍ଶନ କଲେ କିଛିଟା ଚାରିତ୍ରିକ ଅସାମଞ୍ଜସ୍ୟ ଦେଖାଯାଏନାହିଁ ।

□

# ଲକ୍ଷ୍ମୀ–ସରସ୍ୱତୀ କଳି ତୁଟିଲା

ଆମେ ଶୁକବିଳାସ କାବ୍ୟରୁ ଲକ୍ଷ୍ମୀ–ଶନିଙ୍କ କଳିକଥା ଜାଣିଛେ । ବିକ୍ରମାଦିତ୍ୟ ଏଇ କଳିର ସମାଧାନ କରି ଲକ୍ଷ୍ମୀଙ୍କୁ ଉପରପାହ୍ୟା ଦେବାରୁ ଶନି ବଡ଼ ହଇରାଣ କରିଥିଲେ ରାଜା ବିକ୍ରମାଦିତ୍ୟଙ୍କୁ । ସେହିଭଳି ଲକ୍ଷ୍ମୀ ସରସ୍ୱତୀ କଳିକଥା ପୁରାଣରୁ ଆମେ ଜାଣିଛେ, ଲକ୍ଷ୍ମୀ ଭାରି ଚଞ୍ଚଳ । ଆଉ ସରସ୍ୱତୀ ବଡ଼ ମୁଖରା । ଏଇ ଦୁଇ ଜଣଙ୍କୁ ସ୍ୱୟଂ ନାରାୟଣ ଏକାଠି ପାଖରେ ରଖିବାକୁ ଡରନ୍ତି । କେତେବେଳେ ଲକ୍ଷ୍ମୀଙ୍କୁ ନେଇ ସମୁଦ୍ର ଭିତରେ ସାପ ମେଳରେ ଶୁଅନ୍ତିତ କେତେବେଳେ ସରସ୍ୱତୀଙ୍କୁ ନିରୋଳାରେ କିଛି ଜରୁରୀ କାମରେ ମର୍ତ୍ତ୍ୟକୁ ପଠାଇ ଥାଆନ୍ତି । ତେବେ ଏବେ କଳିଯୁଗରେ ଲକ୍ଷ୍ମୀ–ସରସ୍ୱତୀଙ୍କ ଭିତରେ ଗୋଟେ ସାଲିସ ହୋଇଯାଇଛି । ଯେଉଁଠି ଲକ୍ଷ୍ମୀ ସେଇଠି ସରସ୍ୱତୀ ଅଛନ୍ତି । ଏଇ ଦେଖନ୍ତୁ ପୁସ୍ତକ ପ୍ରକାଶକମାନଙ୍କୁ ଏମାନେ ସରସ୍ୱତୀଙ୍କୁ ନେଇ ବ୍ୟବସାୟ କରି ଲକ୍ଷ୍ମୀଙ୍କୁ ମଧ୍ୟ ଆଦରରେ ପାଖରେ ରଖିଛନ୍ତି । ସେହିପରି ବଡ଼ବଡ଼ ପଦପଦବୀଧାରୀ ବ୍ୟକ୍ତି ଯେଉଁମାନଙ୍କୁ ଆମେ ଶ୍ୱେତହସ୍ତୀ ବୋଲି କହନ୍ତି । ସେମାନେହିଁ ସୁନ୍ଦର ସୁନ୍ଦର ପୁସ୍ତକ ପ୍ରକାଶ କରି ସରସ୍ୱତୀଙ୍କ ସ୍ନେହଭାଜନ ହୋଇଛନ୍ତି । ସଚିବ ଆଉ ମନ୍ତ୍ରୀଭାବେ ପ୍ରାୟତଃ ଉଭୟ ଲକ୍ଷ୍ମୀ ଆଉ ସରସ୍ୱତୀଙ୍କୁ ବେଶ ପଟେଇ ପାଖରେ ରଖିପାରିଛନ୍ତି । ଏବେ କେତେଜଣ ଲକ୍ଷ୍ମୀଧାରୀ ସରସ୍ୱତୀ ବରପୁତ୍ରମାନଙ୍କ ସ୍ୱର୍ଗବାସ ହୋଇଗଲା । ଏହି କାରଣରୁ ସଂସ୍କୃତି ବିଭାଗ ମଧ୍ୟ ଏମାନଙ୍କ ସ୍ମୃତି ଉଦ୍ଦେଶ୍ୟରେ ରାଜ୍ୟସ୍ତରୀୟ ସାରସ୍ୱତ ସଭା କରିବା ପାଇଁ ଆଗେଇ ଆସିଛନ୍ତି । ଏଇ କବିମାନେ ଯଦି ଦରିଦ୍ର ହୋଇଥାନ୍ତେ ଆମ ସଂସ୍କୃତି ବିଭାଗ କଣ ଜାଣିଥାଆନ୍ତା । ଏଣୁ ପ୍ରତିଭା ପୂଜା ପାଇଁ ଉଭୟ ଲକ୍ଷ୍ମୀବନ୍ତ ଓ ସରସ୍ୱତୀ ବରପୁତ୍ରମାନେ ହିଁ ଯୋଗ୍ୟ ବିବେଚିତ ହେଉଛନ୍ତି । ଅବଶ୍ୟ ଅନେକ ଧନପତି (ଶିଳ୍ପପତି) ସରସ୍ୱତୀ ବରପୁତ୍ର ମାନଙ୍କୁ ଲକ୍ଷ୍ମୀଙ୍କ ପାଦୁକ ଦେଇ ସମ୍ବର୍ଦ୍ଧିତ କରିଥାନ୍ତି । ଏହି ସବୁ କାରଣରୁ ମନକୁ ଛାଏଁ ଏକ ଧାରଣା ଆସୁଛି କଳିଯୁଗରେ ଲକ୍ଷ୍ମୀ ସରସ୍ୱତୀଙ୍କ କଳି ତୁଟି ଯାଇଛି ।

□

# ଇଂରେଜ ଏ ଦେଶରୁ କଣ ଯାଇଛନ୍ତି ... ?

ବହୁ କଷ୍ଟ, ବହୁ ସାଧନା, ବହୁ ଚେଷ୍ଟା ଫଳରେ ଭାରତ ସ୍ୱାଧୀନ ହେଲା ବାପୁଜୀଙ୍କ ସ୍ୱପ୍ନ ସଫଳ ହେଲା । ଅହିଂସା ଅସ୍ତ୍ର ଓ ଅସହଯୋଗର ଶସ୍ତ୍ର ବଳରେ ଇଂରେଜମାନେ ଏ ଦେଶର ଶାସନ ଡୋରି ଆମରି ହାତରେ ସମର୍ପି ଦେଇଗଲେ ।

ଇଂରେଜ ଗଲେ ସତ, କିନ୍ତୁ ଇଂରେଜକୁ ଆମେ କଣ ସତରେ ଦୂରେଇ ଦେଇ ପାରିଛୁ ଏ ଦେଶରୁ ? ଆମ ଭିତରେ ଇଂରେଜ ସାହେବ ପରିବର୍ତ୍ତେ ଦେଶୀ ସାହେବ ସୃଷ୍ଟିକଲୁ ଧୀରେ ଧୀରେ । ସେମାନେ ଗଲେ କିନ୍ତୁ ସେମାନଙ୍କ ବେଶ ପୋଷାକ, ଚାଲି ଚଳନ, ରଙ୍ଗ ଢଙ୍ଗକୁ ଆମେ ଏମିତି ଆପଣେଇ ନେଲୁ ଯାହାକି, ଆମ ଭିତରେ ଅସ୍ଥିମଜ୍ଜାଗତ ହୋଇଗଲା ।

ଆମ ପିଲାଏ ଇଂରାଜୀ ମିଡିୟମ ସ୍କୁଲରେ ନପଢ଼ିଲେ କଥାରେ କଥାରେ ଡାଡି ମମି ନଡାକିଲେ ଆମକୁ କେଜାଣି କାହିଁକି ଅପମାନିଆ ବୋଧହୁଏ । ଆମର ନିଜର ଗୋଟିଏ ଷ୍ଟାଟସ ନାହିଁ ବୋଲି ମନକୁ ଆସେ । ଜନ୍ମଦିନରେ ଆମେ ଓଡ଼ିଆଏ ଆଗରୁ ସତ୍ୟନାରାୟଣ ପୂଜା କରୁଥିଲୁ, ସତ୍ୟପୀରଙ୍କର ଶିରିଣୀ ଭୋଗ ମହାଆନନ୍ଦରେ ସେବନ କରୁଥିଲୁ ଆଉ ବାଣ୍ଟୁଥିଲୁ ବି । ହେଲେ ଏବେ ଜନ୍ମଦିନରେ ବାପା–ମାଆ ବାର୍ଥଡେ କେକ୍ ନକାଟିଲେ କିମ୍ବା ହାପି ବାର୍ଥ ଡେ ଟୁ ୟୁ ଗୀତ ଗାଇ ମହମବତୀ ନ ଲିଭାଇଲେ ଜନ୍ମଦିନ ଉତ୍ସବଟା ଫିକା ପଡ଼ିଲା ପରି ମନେହୁଏ । ବିବାହ ବାର୍ଷିକ ପାଳନ କରି ପରିବାର କହିଲେ କେବଳ ସ୍ୱାମୀ ସ୍ତ୍ରୀ ଆଉ ନିଜର ପିଲାଛୁଆ କଥାଭାବୁ । ବୁଢ଼ା ବାପା ମାଆ, ଗରୀବ ଭାଇ ଭଉଣୀଙ୍କ କଥା ମନକୁ ମୋଟେ ଆସେନା । ଇଂରାଜୀ ପୋଷାକ ପିନ୍ଧି ବଡ଼ ପାହ୍ୟା ଚାକିରୀ କରି ନିଜେ ଆଲସିଆନ ବଙ୍ଗଳାରେ ରହୁ, ଅଥଚ ଗାଁରେ ମଳିମୁଣ୍ଡିଆ ଭାଇଟି ଭଙ୍ଗା ଚାଳଘରେ ରହି କେତେ କଷ୍ଟ ପାଉଥାଏ ସେକଥା କେବଳ ଭାବୁନା ।

ଯୌଥ ପରିବାର ଚିନ୍ତା ଆମର ଆଉ ନାହିଁ, ଏଣୁ ଖାଦ୍ୟ, ପୋଷାକ,କଥାବାର୍ତ୍ତା, ସାମାଜିକ ପ୍ରଥା, ସବୁଥିରେ ଇଂରେଜୀର ଛାପ ସବୁଠି ସାହେବୀ ଢ଼ଙ୍ଗ ଓ ଆଦବ୍ କାଇଦାରେ ପ୍ରଭାବ, ଏଣୁ ମନକୁ ବେଳେ ବେଳେ ପ୍ରଶ୍ନ ଆସେ ବିଦେଶୀ ଇଂରେଜ ସିନା ଆମ ଦେଶରୁ ଚାଲିଗଲେ, ହେଲେ ଏ ଦେଶୀ ଇଂରେଜ ସାହେବମାନେ ମାଡ଼ି ବସିଛନ୍ତି ଆମ ଭିତରେ ।

●

# କେବଳ ଡିମ୍ବାଣୁ

ସନ୍ତାନଟିଏ ସୃଷ୍ଟିପାଇଁ ପୁରୁଷର ଶୁକ୍ରାଣୁ ଆଉ ନାରୀର ଡିମ୍ବାଣୁ ମିଳନ ଦରକାରଥିଲା । ଏବେ ବୈଜ୍ଞାନିକମାନେ କେବଳ ଡିମ୍ବାଣୁ ଦ୍ୱାରା ଭ୍ରୁଣ ସୃଷ୍ଟିକରିପାରିବାରେ ସକ୍ଷମ ହେଲେଣି । କ୍ଲୋନିଂ କରି ପ୍ରଥମେ ଡଲିମେଣ୍ଢା ସୃଷ୍ଟି ହୋଇଥିଲା । ସେଥିରେ ସେତେବେଳେ ଡିମ୍ବାଣୁ ଏବଂ ଶୁକ୍ରାଣୁର ମିଳନ ହୋଇଥିଲା ।

ଏବେ କିନ୍ତୁ ଗୋଟିଏ ମୂଷା କ୍ଲୋନିଂ ବଳରେ ଜନ୍ମ ଲାଭ କରିଛି । ଏଥିପାଇଁ କେବଳ ଗୋଟିଏ ଡିମ୍ବାଣୁର ମିଳନରେ ସମ୍ଭବ ହୋଇପାରିଛି ।

ଅବଶ୍ୟ ଏକଥା ନୁଆ ନୁହେଁ । ଆମେ ପୁରାଣରେ ଗଙ୍ଗା ମାହାତ୍ମ୍ୟରେ ପଢ଼ିଛେ ସ୍ୱାମୀର ଅବର୍ତ୍ତମାନରେ ଦୁଇଟି ରମଣୀ କାମଜ୍ୱାଳାରେ ଅଧୀର ହୋଇ ସମକାମିତା ଫଳରେ ଏକ ଅସ୍ଥିବିହୀନ ସନ୍ତାନ ଜାତ କରିଥିଲେ । ଅବଶ୍ୟ ପୁରାଣରେ କୁହାଯାଇଛି ପୁରୁଷର ଶୁକ୍ରାଣୁ ଭ୍ରୁଣର ଅସ୍ଥି ନିର୍ମାଣରେ ସହଯୋଗ କରେ । ଏଣୁ ଜନ୍ମିତ ସନ୍ତାନଟି ଦୁର୍ବଳ ମେଦବହୁଳ ଓ ଅସ୍ଥିହୀନ ଥିଲା ।

ସେ ଯାହା ହେଉ ଏବେ ମୂଷିକ ସମାଜରେ ଯାହା ଘଟିଛି କାଲି ମାନବ ସମାଜରେ ଯେ ତାହା ନଘଟିବ କିଏ କହିବ ? ତାହାହେଲେ ଏବେ କେତୋଟି ଦେଶ ସମଲିଙ୍ଗୀ ବିବାହକୁ ଆଇନ୍ ସମ୍ମତ କରିବାରେ କିଛି ଭୁଲ କରିନାହାନ୍ତି । ହୁଏତ ଦିନ ଆସିବ କେବଳ ଶୁକ୍ରାଣୁ ଶୁକ୍ରାଣୁ ମିଳନ ଅଥବା ଡିମ୍ବାଣୁ ଡିମ୍ବାଣୁ ମିଳନ ଭ୍ରୁଣ ସଂଚାର ସମ୍ଭବ ହେବ ।

ବୋଧହୁଏ ପୁରୁଷ ଆଉ ନାରୀ ଭିତରେ ଆଜି ସାମାଜିକ ସ୍ତରରେ ସମାନତା ଆଣିବାରେ ଯେଉଁ ପ୍ରଚେଷ୍ଟା ଚାଲିଛି ପ୍ରଜନନ କ୍ଷେତ୍ରରେ ସେଇ ସମାନତା ଆସିଯିବ ।

ଧନ୍ୟ ବିକାଶର କରାମତି । ଆମେ ଭାବୁଛୁ ଏହା ଫଳରେ ବଧୂ ନିର୍ଯ୍ୟାତନା ଆଉ ଯୌତୁକ ଭୟ ବୋଧେ ରହିବନାହିଁ ।

•

# ଢାବାରେ... ମଦ... ଆଉ.....

ଏବେ ସରକାର ନିଷ୍ପତ୍ତି ନେଇଛନ୍ତି ଢାବାରେ ତନ୍ଦୁରି ରୁଟି ତଡକା ଯେପରି ମିଳୁଛି ମଦବି ଜଣେ ସେହିପରି ପାଇପାରିବ । ଆଗେ ଲୁଚା ଛପା ପିଆପିଇ ଚାଲିଥିଲା । ଏବେ ଖୁଲମ୍‌ଖୁଲା ପିଆ ହେବ । ସରକାର ରାଜସ୍ୱ ପାଇବେ । ଏଣୁ ଢାବାରେ ମଦ ବ୍ୟବସାୟ ଆଗରୁ ଚାଲୁଥିଲା । ଏବେବି ଚାଲିବ । ତଫାତ୍ ଏତିକି ଆଗରୁ ଢାବା ମାଲିକ ଆଉ ମଦ ବିକାଳିମାନେ ଲାଭବାନ ହେଉଥିଲେ । ସରକାର ପଇସାଟେ ପାଉ ନଥିଲେ । ଏବେ ସରକାର ଢାବାର ଆକାର ପ୍ରକାର ଓ ବେପାର ଦେଖିକରି କର ଧାର୍ଯ୍ୟ କରିବେ ।

ଏଠି ଗୋଟେ ପ୍ରଶ୍ନ ଉଠୁଛି । ସମାଜରେ ଚୋରି, ଡକାୟତି, ଧର୍ଷଣ ଆଉ ଦେହ ବ୍ୟବସାୟ ମଧ୍ୟ ଲୁଚାଛପା ଚାଲିଛି । ଏ ସବୁଥିରେ ସରକାର ରାଜସ୍ୱ ପାଉଛନ୍ତି । ଏଣୁ ଚୋରକୁ କଣ ଚୋରି କରିବାକୁ ଲାଇସେନ୍ସ ଦେଇ ତାଙ୍କଠାରୁ ମାସିକିଆ ରାଜସ୍ୱ ନେବା । ଯିଏ ଧର୍ଷଣକାରୀ ସିଏ କଣ ଧର୍ଷଣ ପାଇଁ ଲାଇସେନ୍ସ ପାଇ ଧର୍ଷଣ କରି ଚାଲିବ । ଆଉ ଦେହ ବ୍ୟବସାୟ; ଏଥିପାଇଁତ ଆଗରୁ କାଁ ଭାଁ ଲାଇସେନ୍ସ ବ୍ୟବସ୍ଥା ଅଛି ବୋଲି ଶୁଣାଯାଏ ।

ତେବେ ଆମ ବିଚାରରେ ମହାରାଷ୍ଟ୍ର ସରକାର ହୋଟେଲ ଆଉ ବାରରେ ଡ୍ୟାନ୍ସିଂ ଗାର୍ଲଙ୍କୁ ନାଚିବାର ସୁଯୋଗ ନଦେଇ ବୋକାମି କଲେ । ସେମାନେ ଆମ ସରକାରଠୁଁ ରାଜସ୍ୱ ବୃଦ୍ଧିର କଦର ଶିକ୍ଷାପାଇଁ ଏକାମ୍ର ନଗରକୁ ଟ୍ରେନିଂ ପାଇଁ ଆସିବା ଉଚିତ୍ ।

ରାଜସ୍ୱ ବୃଦ୍ଧିପାଇଁ ଜଣେ ସ୍ତମ୍ଭକାର ଭଲ ପ୍ରସ୍ତାବଟିଏ ଦେଇଛନ୍ତି । ମୁଁ ତାଙ୍କ ସହ ଏକମତ । ସରକାର ଖର୍ଚ୍ଚକାଟରେ ନିଷ୍ଠା ଦେଖାନ୍ତୁ । କର୍ମଚାରୀଙ୍କ ଦରମା ସର୍ବୋଚ୍ଚ ପାଞ୍ଚ/ଛଅ ହଜାର ରଖନ୍ତୁ । ତେବେ ଏହା କଣ ଆଉ ସମ୍ଭବ । ସଂଘର ବଳପାଖରେ ସରକାର କଳ କିଛିନୁହେଁ । ନା କଣ କହୁଛନ୍ତି । ଆମେ ଅନେକ ସେଇ ଏକା ଲାଉର ମଞ୍ଜି ।

# ପାନେଲ୍ କରିବା, କମିଶନ ବସାଇବା

ଆମ ଭାରତ ସରକାର ଏବେ ଦୁଇଟି କାମ ପାଇଁ ବଡ଼ ବ୍ୟସ୍ତ । ଗୋଟିଏ ହେଲା ପ୍ରତି କଥାରେ ନିଷ୍ପତ୍ତି ନେବାପାଇଁ ପାନେଲ୍ ବସାଇବା ଯଦି ଜନସାଧାରଣ ତରଫରୁ କୌଣସି ଘଟଣାକୁ ନେଇ ଆନ୍ଦୋଳନ ହୁଏ ତେବେ ସରକାର ଗୋଟିଏ କମିଶନ ବସାଇ ଦେଇ ଲୋକଙ୍କୁ ସନ୍ତୁଷ୍ଟ କରି ଦିଅନ୍ତି । ଏହାଦ୍ୱାରା ସରକାର ଉପସ୍ଥିତ ସମସ୍ୟାରୁ ଉଦ୍ଧାର ପାଇଯାଆନ୍ତି । ସରକାର ମଧ୍ୟ ଭଲ ଭାବେ ଜାଣନ୍ତି ଜନସାଧାରଣଙ୍କ ଖୁବ୍ ଶୀଘ୍ରମତ ବଦଳିଯିବ ।

ତେବେ ମନରେ ପ୍ରଶ୍ନଆସେ ଆମର ରାଜ୍ୟସ୍ତରୀୟ ବିଧାୟକ, ମନ୍ତ୍ରୀ, ସଚିବ ଅଛନ୍ତି । ସଚିବ ପୁଣି ବିଭିନ୍ନ ସ୍ତରରେ । ସେହିପରି ମନ୍ତ୍ରୀମଧ୍ୟ ବିଭିନ୍ନ ସ୍ତରରେ । ଏହାଛଡ଼ା ଅଧସ୍ତନ କର୍ମଚାରୀ ମଧ୍ୟ ମାଳ ମାଳ । ସେମାନଙ୍କ ପାଇଁ ଅର୍ଥାତ ଏମାନଙ୍କ ଏବଂ ସେମାନଙ୍କ ପରିବାରର ଭରଣ ପୋଷଣ ପାଇଁ ଜନସାଧାରଣଙ୍କ ରାଜସ୍ୱରୁ କୋଟି କୋଟି ଟଙ୍କା ଖର୍ଚ୍ଚ ହେଉଛି । ଅଥଚ ଏମାନେ ନିଜେ କୌଣସି ସୁଚିନ୍ତିତ ସୁଷମ ଏବଂ ସୁଗମ ନିଷ୍ପତ୍ତି ନେଇ ପାରୁନାହାନ୍ତି ।

ବିଶେଷତଃ ଆମେ ଆଇ.ଏ.ଏସ୍ ଅଫିସର ବା ବରିଷ୍ଠ ଓ.ଏ ଏସ୍ ଅଫିସରଙ୍କ କଥା ଭାବିବା । ଏମାନେ ହେଉଛନ୍ତି ସରକାରଙ୍କ ବୁଦ୍ଧିକେନ୍ଦ୍ର । ଏମାନଙ୍କ ବୁଦ୍ଧି ଓ କୌଶଳରେ ସରକାର ଗାଡ଼ି ଘିଡ଼ି ଘିଡ଼ି ଚାଲେ । ଏଇମାନେ ଇଂଜିନ୍ ଆଉ ଜନସାଧାରଣ ହେଲେ ଡବା । ଏମାନେ ଯେଉଁ ଆଡ଼କୁ ଟାଣନ୍ତି ଡବା ସେଇଆଡ଼େ ଚାଲେ । ଏମାନେ ପଞ୍ଚବାର୍ଷିକ ଯୋଜନା ଗଢ଼ି ଜନସାଧାରଣଙ୍କ ଉପରକୁ ପାଞ୍ଚବର୍ଷ ଭିତରେ ବାବାରେ ଆଲୁଅ କରିଦେବାରେ ଭେଳିକି ଦେଖାନ୍ତି । ମାତ୍ର ପାଞ୍ଚବର୍ଷ ବିତିଗଲେ ଦେଖାଯାଏ – ଗୋଦରୀ କୋଡ଼େ ଯେତେ ମାଡ଼େ ସେତେ ।

ତେଣୁ ଆମେ ଜନସାଧାରଣ ଭାବିବା ସ୍ୱାଭାବିକ ଜାପାନ ଭଳି ଦୁଇଦୁଇଟା ପରମାଣୁ ବୋମାରେ ଧ୍ୱଂସବିଧ୍ୱଂସ ଗୋଟେ ଦେଶ ମାତ୍ର ୬୦ବର୍ଷ ଭିତରେ ଏକ ସୁପରଶକ୍ତିରେ ପରିଗଣିତ ହୋଇପାରିଲା । କେତେ ଶିଳ୍ପୋନ୍ନତ ହେଲା । ଅଥଚ ଆମେ ସ୍ୱାଧୀନତା ପାଇବାର ୬୦ ବର୍ଷ ପାଖାପାଖି ହେଲେବି ବିଶେଷ କିଛି ଆଗୁଆ ହୋଇପାରିଲେ ନି ଜାପାନ ତୁଳନାରେ । ଏହାର ଉତ୍ତର ଆମେ ପାର୍ଲ୍ୟାମେଣ୍ଟ କଣ ଦେଇପାରିବ । ନା – ଏଇ ଉତ୍ତର ପାଇଁ ପାନେଲ୍ ବସିବ ।

# ସାଇବର କେଫ୍‌ରେ ଭାଲେଣ୍ଟାଇନ୍ ତାମସା

**ଭା**ଲେଣ୍ଟାଇନ୍ କଣ ଭାବିଥିଲେ ତାଙ୍କ ନାମରେ ଭାଲେଣ୍ଟାଇନ୍ ଡେ ପାଳିତ ହେବ । ପ୍ରତିବର୍ଷ ଫେବୃଆରୀ ୧୪ ତାରିଖରେ ଏହି ଦିବସଟି ପ୍ରେମୀ ଯୁଗଳଙ୍କ ପାଇଁ ଏକ ଉଲ୍ଲାସ ମୁଖର ଦିନ ।

ରୋମର ସମ୍ରାଟ କ୍ଲାଣ୍ଡିୟସଙ୍କ ଆଦେଶବଳରେ ଏଇ ଫେବୃଆରୀ ୧୪ ତାରିଖରେ ଭାଲେଣ୍ଟଇନ୍ ଫାଶୀ ପାଇଥିଲେ । କାରଣ ସମ୍ରାଟଙ୍କ ଇଚ୍ଛା ବିରୁଦ୍ଧରେ ଯାଇ ଯୁବକ ଯୁବତୀଙ୍କୁ ଗୁପ୍ତରେ ଗୀର୍ଜାରେ ବିବାହ କରାଇଥିଲେ । ଆପଣ ଜାଣନ୍ତି ସମ୍ରାଟ କାହିଁକି ଏପରି ପଦକ୍ଷେପ ନେଲେ । ତାଙ୍କର ଏକ ବିଚିତ୍ର ଖିଆଲ ଥିଲା । ଯୁବକମାନେ ବିବାହ କଲେ ସେମାନେ ପ୍ରେମରେ ମାତି ରହିବେ । ପୌରୁଷ ନଷ୍ଟ ହେବ । ସେମାନେ ସୈନିକ ହୋଇପାରିବେନାହିଁ ।

କି ବିଡମ୍ବନା ସତେ । ସେଦିନ ରୋମ୍ ସମ୍ରାଟ୍ ଯୁବକମାନଙ୍କ ବଳବୀର୍ଯ୍ୟ ସୁରକ୍ଷା ପାଇଁ ସିନା ଭାଲେଣ୍ଟାଇନଙ୍କୁ ଫାଶୀ ଦେଇଦେଲେ । ହେଲେ ଆଜି ଭାଲେଣ୍ଟାଇନ ଡେ ରେ ଯୁବକ ଯୁବତୀମାନଙ୍କ ପ୍ରେମ ଦିଆନିଆ ଦେଖିଲେ ରୋମ ସମ୍ରାଟ ନିଜେ ନିଜ ଗଳାରେ ଫାଶୀ ଲଗାଇ ଆତ୍ମହତ୍ୟା କରନ୍ତେ ।

ଗୀର୍ଜାରେ ସିନା ଭାଲେଣ୍ଟାଇନ୍ ଯୁବକ ଯୁବତୀଙ୍କୁ ବିବାହ କରାଇ ପବିତ୍ର ସଂସାର ବନ୍ଧନରେ ବାନ୍ଧି ଦେଇଥିଲେ । ହେଲେ ଆଜି ଚର୍ଚ୍ଚରେ, ରେସ୍ତୋରାଁରେ, ପାର୍କରେ, ଷ୍ଟାର ହୋଟେଲରେ ପ୍ରେମୀ ଯୁଗଳଙ୍କ ଚାହାଣି ଛଟକ, ହସାହସି, ଅଙ୍ଗଭଙ୍ଗୀ ଦେଖିଲେ ବୁଝାଯାଏ ଇୟେ କଣ ପବିତ୍ର ବନ୍ଧନ ।

ସବୁଠୁ ସୁନ୍ଦର ଖୋରାକ ଯୋଗାଉଛି ଏବେ ସାଇବର କେଫ୍ ଗୁଡ଼ିକ । ତା ଭିତରେ ପାଖାପାଖି ଛୋଟ ଛୋଟ କାଠ କ୍ୟାବିନ୍, କମ୍ପ୍ୟୁଟର ଇଣ୍ଟରନେଟ ବେଶ ଖୋରାକ ଯୋଗାଏ ପ୍ରେମ କରିବା ପାଇଁ । ଏପରିକି ବ୍ଲୁ ଫିଲ୍ମ ଦେଖିବାର ଲୋଭ ସମ୍ବରଣ କରିହୁଏନା ।

ଏବେତ ଭାଲେଣ୍ଟାଇନ୍ ଦିବସର ବାର୍ତ୍ତା ଘରେ ଘରେ ପହଞ୍ଚାଇ ପାରୁଛି ମୋବାଇଲ୍ ଫୋନ୍ ।

ଭାଲେଣ୍ଟାଇନ୍ ଥରେ ଆସି ଦେଖିଯାଆନ୍ତେ ଭାଲେଣ୍ଟାଇନ ଦିବସ ପାଳନରେ କି ବ୍ୟତିକ୍ରମ । ନା ତୁମେ ଆସନା । ତୁମେ ଏହି ଦୃଶ୍ୟ ଦେଖି ସହିପାରିବନି ।

✷

# ବହୁମୁତ୍ର ରୋଗୀ ଓ ଡି. ଏମ୍. ୟୁ ଟ୍ରେନ୍

ଆଜ୍ଞା ଗୋଟିଏ ଗାଡ଼ି ପାରାଦ୍ୱୀପରୁ କଟକ ଯାଏ ଆସେ । କଟକରେ କିଛି ସମୟ ରହି ପୁଣି ଭଦ୍ରକ ଆସେ । ଏହି ଗାଡ଼ିକୁ ପାରଦ୍ୱୀପ–କଟକ ବା କଟକ ସଟଲ ବା ଡି. ଏମ୍. ୟୁ. ଟ୍ରେନ୍ କୁହାଯାଏ । ଏହି ଟ୍ରେନ ବିଷୟରେ ଦି ଧାଡ଼ି ଲେଖିବା ପାଇଁ ମନହେଉଛି ।

ଏଇ ଟ୍ରେନ୍‌ଟି ପ୍ରତି ଷ୍ଟେସନରେ ପ୍ରାୟ ମିନିଟିଏ କିମ୍ବା ଦୁଇ ମିନିଟ୍ ରହେ । ପାରାଦ୍ୱୀପ ଆଡୁ ଆସୁଥିବା ଯାତ୍ରୀମାନେ କଟକରେ ଓହ୍ଲାଇ ପୁଣି ଭଦ୍ରକ–ଖଲ୍ଲିକୋଟ ଡି.ଏମ୍.ୟୁରେ ଭୁବନେଶ୍ୱର ଅଭିମୁଖେ ଯାତ୍ରା କରନ୍ତି । ତେବେ ଏତେ ସବୁ ବଖାଣ ପଛରେ ଏକ ଆହ୍ୱାନ ମଧ୍ୟ ରହିଛି । ସେ ଆହ୍ୱାନଟି କୁହ କିମ୍ବା ସ୍ଲୋଗାନଟି କୁହ ତାହା ହେଉଛି ହେ ବହୁମୂତ୍ର ରୋଗୀ ଗଣ ସାବଧାନ ! ସାବଧାନ !

କାରଣଟା ଆପଣ ଅନୁମାନ କରିସାରିଥିବେ । ବହୁମୂତ୍ର ରୋଗୀ ବିଚରା ପ୍ରାୟ ଘଣ୍ଟେ ଦି ଘଣ୍ଟା ଅନ୍ତରରେ ବେଳେବେଳେ ୧୫ ମିନିଟ୍ କି ତିରିଶ ମିନିଟ୍ ଅନ୍ତରରେ ଏକ କରିବାକୁ ଚାହିଁଥାଏ । ଅଥଚ କେତେ ନିଦାରୁଣ ଏହି ପାରାଦ୍ୱୀପ ଭଦ୍ରକ ଡି.ଏମ୍.ୟୁ ଟ୍ରେନ୍ । ଏଥିରେ ଗଲେ ସମସ୍ତ ଯାତ୍ରୀଙ୍କୁ ଝାଡ଼ା ପରିସ୍ରା ବନ୍ଦ କରିବାକୁ ପଡ଼ିବ । ତେବେ ଆପଣ ଯଦି ବାଳକ ସୁଲଭ କିମ୍ବା ଶିଶୁ ମୁଲକ ମନନେଇ ଲଜ୍ଜା ତ୍ୟାଗକରି ସେଇ ଡବାରେ ମୂତ୍ରତ୍ୟାଗ କରିଦିଅନ୍ତି କିଛି ଅସୁବିଧା ନାହିଁ ।

ତେବେ ଏହା କଣ ସମ୍ଭବ । ବୟସ୍କ ଲୋକଟି ଶିଶୁପରି କଣ ଟ୍ରେନ ଡବା ଭିତରେ ମୂତ୍ର ତ୍ୟାଗ କରିପାରିବ । ପୁନଶ୍ଚ ବୟବୃଦ୍ଧ ଲୋକ ହୋଇଥିଲେ ଟ୍ରେନ୍‌ରୁ ଓହ୍ଲାଇ ପ୍ଲାଟଫର୍ମରେ ନିରୋଳା ସ୍ଥାନଟିଏ ଖୋଜି ପରିଶ୍ରାକରି ପୁଣି ଗାଡ଼ି ଚଢ଼ିବା ବିପଦପୂର୍ଣ୍ଣ ନିଶ୍ଚୟ ।

ଆମେ ବୁଝିପାରୁନୁ ରେଲୱେ କର୍ତ୍ତୃପକ୍ଷ କେଉଁ ମହତ ଉଦ୍ଦେଶ୍ୟନେଇ ଏଇ ମଳମୂତ୍ର ନିରୋଧ କମ୍ପାଟମେଣ୍ଟ ମାନ ଯୋଗ କରିଛନ୍ତି । ସହରତଳି ଅଞ୍ଚଳରେ କିମ୍ବା କମ୍ ଦୂରତ୍ୱ ଯାତ୍ରାପାଇଁ ଏ ଟ୍ରେନ୍ ହୁଏତ ଉପଯୋଗୀ । କିନ୍ତୁ ଲମ୍ବା ଯାତ୍ରାବେଳେ ଜଣେ ଏ ଗାଡ଼ିରେ ଗଲେ କି ଅସୁବିଧା ହେବ କର୍ତ୍ତୃପକ୍ଷ ଟିକେ ଭାବିବା ହୁଅନ୍ତୁ ।

✷

# ପୋଷାକ : ଧର୍ଷଣର ଇନ୍ଧନ

ଏବେ ନିକଟରେ ଟେଲିଭିଜନରୁ ଗୋଟିଏ ଦୃଶ୍ୟ ଦେଖିବାକୁ ମିଳିଥିଲା । ଗୋଟିଏ ନିରୋଳା ନଦୀ କୂଳରେ ଯୁବକ, ଯୁବତୀ ଦିଜଣ ଠିଆ ହୋଇ ପରସ୍ପରକୁ ପ୍ରେମ ନିବେଦନ କରୁଛନ୍ତି । ଉଭୟ ଉଭୟଙ୍କୁ କହୁଛନ୍ତି ଆଇ ଲଭୟୁ । ଅର୍ଥାତ୍ ଏ ଯୁଗର ଇଲୁ ଇଲୁ । ଯୁବକ ଜଣଙ୍କର ପୋଷାକ ଜିନ୍ ପ୍ୟାଣ୍ଟ, ଆଉ ଇନ୍ କରାଯାଇଥିବା ଫୁଲ ସାର୍ଟ । ଯୁବତୀ ଜଣଙ୍କର ପୋଷାକ ମଧ୍ୟ ଜିନ୍ ପ୍ୟାଣ୍ଟ, ଉପରେ ଫୁଲଓଭର । ଅବଶ୍ୟ ଫୁଲଓଭରଟି ପ୍ରିଣ୍ଟେଡ୍ ଏବଂ ଏଭଳି ମାପ ଚୁପରେ ତିଆରି ,ଯେପରି ଛାତିର ସ୍ୱର୍ଣକାତର ଅଂଶ ଦୁଇଟି ବେଶ୍ ଆଖି ଦୃଶିଆ ଭାବେ ସମ୍ମୁଖଭାଗକୁ ପ୍ରୋଜେକ୍ଟ କରୁଛି । ସବୁଠୁ ଦୁଃଖର କଥା କପଡ଼ାଟିର ପ୍ରିଣ୍ଟ ଏପରି ହୋଇଛି ବା କୁଟିକାମ ହୋଇଛି ଯେପରି ତାହା ଚୁଚୁକର ଭ୍ରମ ସୃଷ୍ଟି କରିବ । ଏଭଳି ପୋଷାକ ପିନ୍ଧି ପ୍ରେମରେ ପାଗଳ ହୋଇଥିବାବେଳେ ଖଳନାୟକ ଆସିଲେ ପ୍ରେମିକଙ୍କୁ ଘୁସିମାରି ବେହୋସ କରିଦେଲେ । ତାପରେ ତାଙ୍କ ପ୍ରେମିକାକୁ ସଂପୂର୍ଣ୍ଣ ଉଲଗ୍ନ କରିବାର ପ୍ରାକ୍ ଦୃଶ୍ୟ ଦେଖାଇଲେ । ପରେ ପରେ ଧର୍ଷଣ ଓ ହତ୍ୟା । କଥାଟି ଏଇଠି କହିବାରେ ଯେ ସେଇ ଧର୍ଷଣ ଓ ହତ୍ୟା ସମୟରେ ମୁଁ ଜଣେ ଦର୍ଶକ ଭାବେ ଆଦୌ ଯୁବତୀଟି ପ୍ରତି ସହାନୁଭୂତିଶୀଳ ହେଲିନାହିଁ । ବରଂ ମନଭିତରେ ବେଶ ପ୍ରତିକ୍ରିୟା ହେଲା ମୁଁ ଉତ୍ତେଜିତ ହୋଇ କହିଉଠିଲି ଏମିତି ଉତ୍ତେଜକ ପୋଷାକ ପିନ୍ଧି ଯେଉଁ ଯୁବତୀମାନେ ପ୍ରେମିକ ସନ୍ଧାନରେ ଆସି ବା ପ୍ରେମିକ ସହ ଆସି ନିରୋଳାରେ ଆଳାପ କରନ୍ତି ସେମାନେ ଧର୍ଷଣର ଶୀକାର ହେବା ସ୍ୱାଭାବିକ ନୁହେଁ କି ? ଏଣୁ ଏଇ ପୋଷାକ ଆଜି ବୋଧେ ଧର୍ଷଣ ପାଇଁ ଇନ୍ଧନ ଯୋଗାଉଛି । ଏଣୁ ମୋର ଯୁବତୀ ମାନଙ୍କୁ ଅନୁରୋଧ, ସେମାନେ ନିଜ ପୋଷାକ ପିନ୍ଧି ଥରେ ଆଇନା ଆଗରେ ଠିଆ ହୋଇ ନିଜକୁ ଭଲ ଭାବେ ଦେଖନ୍ତୁ । ଦେଖନ୍ତୁ ସେଥିରେ ଆମ ସଂସ୍କୃତିର ପ୍ରତିଫଳନ କେତେ ଆଉ ଯୌନ ବିଶୃଙ୍ଖଳ ଭାଇରସ୍ କେତେ ?

✷

# ନାରୀହିଁ ନାରୀର ଶତ୍ରୁ

ଆଜି ସମାଜରେ ନାରୀ ନିର୍ଯ୍ୟାତନା ଏକ ସାଧାରଣ ଘଟଣା । ଧର୍ଷଣ, ଶୋଷଣ ଯୌତୁକ ଦାବୀର ଶୀକାର ହେଉଛି । ଆଜି ସାମାଜିକ ବନ୍ଧନ ଯେପରି ହୁଗୁଳି ଗଲାଣି । ମୂଲ୍ୟବୋଧ ପ୍ରତି କାହାରି ସମ୍ମାନ ନାହିଁ । ନାରୀକୁ ଆଜି ପଣ୍ୟଭାବେ ଗ୍ରହଣ କରୁଛନ୍ତି ତଥାକଥିତ ସମାଜର ବକ ଧାର୍ମିକ ଆଉ କପଟୀ କଙ୍କଣ ଦାନୀ ବ୍ୟାଘ୍ରଗଣ । ତେବେ ଆଜିଠାରୁ ସମାଜରେ ସବୁଠୁ ବଡ଼ ସମସ୍ୟା ହେଉଛି ବଧୁନିର୍ଯ୍ୟାତନା, ଏଇ ବଧୁନିର୍ଯ୍ୟାତନା ପଛରେ କେବଳ ଯୌତୁକ ଲାଳସା ବିଦ୍ୟମାନ । ଅନେକ କ୍ଷେତ୍ରରେ ଦେଖାଯାଉଛି ଯୌତୁକ ଜନିତ ଅତ୍ୟାଚାର ଆଉ ନିର୍ଯ୍ୟାତନା ପଛରେ ଶାଶୂ ନଣନ୍ଦ ପ୍ରମୁଖ ଭୂମିକା ଗ୍ରହଣ କରୁଛନ୍ତି । ଶାଶୁଟି ଭାବୁନାହିଁ ସେ ବି ଦିନେ ଥିଲା ବୋହୂ । ନଣନ୍ଦଟି ଭାବୁନାହିଁ ସେ ବି ଦିନେ ହେବ କେଉଁ ନଣନ୍ଦର ଭାଉଜ । ବେଳେ ବେଳେ ବଧୁନିର୍ଯ୍ୟାତନା ସମୟରେ ପାଖ ପଡୋଶୀମାନେ ନୀରବ ଦ୍ରଷ୍ଟା ସାଜୁଥିବାରୁ ଏହା ସେ ନିର୍ଯ୍ୟାତନାର ପ୍ରୋତ୍ସାହନ ପରି ମନେହୁଏ । ଏପରିକି ରାତିଅଧରେ ଗୋଟାଏ ବଧୁର କରୁଣ ଚିତ୍କାରକୁ ପାଖ ପଡ଼ୋଶୀମାନେ ଶୁଣି ନ ଶୁଣିଲା ପରି ହାବଭାବ ଦେଖାଉଥିବାରୁ ଅତ୍ୟାଚାରୀ ମାନଙ୍କ ସାହାସ ବୃଦ୍ଧିପାଉଛି । ବୋଧହୋଏ ତୁତ ମୁତୁରିଙ୍କୁ ମୁଁ ତ ମୁତୁରି ହେଂସ କାହିଁ ପାଇଁ ଧୋଇବା ନ୍ୟାୟରେ ଏମାନେ ପରସ୍ପରକୁ ସାହାଯ୍ୟ କରି ସମାଜରେ ଏକ ବିକଳ ଚିତ୍ର ପ୍ରଦାନ କରୁଛନ୍ତି । ଦିନଥିଲା ଝିଅଟି ଶାଶୁଘରକୁ ଯାଇ ମଧ୍ୟ ଶାଶୁ ଠାରୁ ମାଆର ସ୍ନେହପାଇ ନଣନ୍ଦଠୁଁ ଭଉଣୀର ସ୍ନେହପାଇ ଶାଶୁଘରକୁ ବାପଘରଠାରୁ ଭିନ୍ନ ଭାବେ ଗ୍ରହଣ କରିବାର ଅବକାଶ ପାଉନଥିଲା । ହେଲେ ଆଜି ସମାଜର ଚିତ୍ର ବଦଳିଯାଇଛି । ବୋଧହୁଏ ବେକାରୀ ସମସ୍ୟା ଆଜି ଏଥିପାଇଁ ଦାୟୀ । ଯୌତୁକ ନିରୋଧ ଆଇନକୁ ଠିକ୍‌ଭାବେ ତର୍ଜମା କରି ଦୋଷୀକୁ ଦୃଷ୍ଟାନ୍ତ ମୂଳକ ଦଣ୍ଡ ପ୍ରଦାନ କଲେ ଏ ସମସ୍ୟା କିଛିଟା ସମାଧାନ ହୁଅନ୍ତା । ହେଲେ ସେ ସୁଦିନ କେବେ ଆସିବ ?

✷

# ଶ୍ୱେତ ରତ୍ନାକର କି ଜୟ !

ରତ୍ନାକର ଜଣେ ଖଳ ପ୍ରକୃତିର ଲୋକଥିଲା । ଅନ୍ୟକଥାରେ କହିବାକୁ ଗଲେ ସେ ମାନବ ସମାଜର କ୍ଷତି କରୁଥିଲା । ଡକାୟତି କରି ନିଜ କୁଟୁମ୍ବ ପୋଷୁଥିଲା । ପରେ ଏଇ ଡକାୟତର କିପରି ହୃଦୟ ପରିବର୍ତ୍ତନ ହେଲା । ତପସ୍ୟା କରି ଋଷି ପ୍ରତିମ ବାଲ୍ମିକୀରେ ପରିଣତ ହେଲା । ସେ କଥା ଆପଣମାନେ ସମସ୍ତେ ଜାଣନ୍ତି ।

ତେବେ ସେଇ ରତ୍ନାକରର ରଙ୍ଗ କଳା କି ଗୋରା ସେ ଡେଙ୍ଗା କି ବାଙ୍ଗରା, ପତଳା କି ମୋଟା ଆମକୁ ଜଣାନାହିଁ । ଆମେ ଏଠି ଶ୍ୱେତବର୍ଣ୍ଣ ରତ୍ନାକରଙ୍କ କଥା କହୁଛୁ । ଏଇ ରତ୍ନାକରଙ୍କୁ ଶୁକ୍ଳାମ୍ବରଧର ବିଷ୍ଣୁ ମଧ୍ୟ କୁହାଯାଇପାରେ କିମ୍ବା ସାଧା ସିଧା ସରଳ ବାକ୍ୟରେ ଧୋବ ଧୋବଳିଆ ବାବୁ କହିଲେ ଚଳିବ । ଏଇ ରତ୍ନାକରଗଣଙ୍କୁ ଆପଣ ରାଜଧାନୀରେ ଦେଖିବାକୁ ପାଇବେ ଶ୍ୱେତ ହସ୍ତୀ ରୂପରେ ।

ଦସ୍ୟୁ ରତ୍ନାକର ସମ୍ପତ୍ତି ଲୁଣ୍ଠନ କରୁନଥିଲା । ସେ ତାର କୁଟୁମ୍ବ ଭରଣ ପୋଷଣ ପାଇଁ ଯେତିକି ଦରକାର ସେତିକି ପଥିକୀଙ୍କଠାରୁ ଛଡ଼ାଇ ନେଉଥିଲା । ଯିଏ ବାଧା ଦେଉଥିଲା ତାକୁ ଅବଶ୍ୟ ଜୀବନ ଦେବାକୁ ପଡୁଥିଲା । କିନ୍ତୁ ଆମ ଏଇ ବର୍ଣ୍ଣିତ ଶ୍ୱେତରତ୍ନାକରଙ୍କ ଲୁଣ୍ଠନ ପ୍ରକ୍ରିୟା ସ୍ୱତନ୍ତ୍ର । ଇୟେ ନିଜେ ସିଧା ସଳଖ କିଛି ନିଅନ୍ତିନାହିଁ । ଏମାନଙ୍କ ଚେଲା ଉପଚେଲା ଜରିଆରେ ବେଶ୍ କିଛି ମୋଟା ଅଙ୍କରେ ଉତ୍କୋଚ ଆଦାୟ କରନ୍ତି । ଏମାନଙ୍କର କୁଟୁମ୍ବ ପୋଷିବାର ଆବଶ୍ୟକତା ନଥାଏ । କିନ୍ତୁ ପ୍ରଚୁର ସମ୍ପତ୍ତିର ଅଧିକାରୀ ହୋଇଥିଲେ ବି ଅନ୍ୟର ସ୍ଥାବର ଅସ୍ଥାବର ସମ୍ପତ୍ତି ଲୁଣ୍ଠନ ପାଇଁ ଆଦୌ ଦ୍ୱିଧା କରନ୍ତିନାହିଁ ।

ଏହି ଶ୍ୱେତରତ୍ନାକର ଗୋଷ୍ଠୀ ଭିତରୁ ଯେଉଁମାନେ ପାଞ୍ଚବର୍ଷିଆ ଅର୍ଥାତ୍ ଯେଉଁମାନେ ପ୍ରତି ପାଞ୍ଚବର୍ଷରେ ଥରେ ନିର୍ବାଚନ ଜିତି ଏଇ ଶ୍ୱେତ ରତ୍ନାକର ଭୂମିକା ଧରନ୍ତି, ସେମାନେ ସବୁଠାରୁ ଭୟଙ୍କର । ସେମାନେ ନିଜର ଚଣ୍ଡୀ ଚାମୁଣ୍ଡା ମାନଙ୍କ ସାହାଯ୍ୟରେ ପ୍ରଜାମାନଙ୍କ ଠାରୁ ପ୍ରତ୍ୟେକ୍ଷ ହେଉ କି ପରୋକ୍ଷ ଭାବରେ ହେଉ ଲୁଣ୍ଠନ କରନ୍ତି ଅଥଚ ଆପଣାର ପ୍ରଶସ୍ତି ଗାନ କରିବା ପାଇଁ ବିହିତ ବ୍ୟବସ୍ଥା କରିଥାଆନ୍ତି ।

ଏଣୁ ଏକ ପକ୍ଷରେ ଏଇ ବଟସ୍କରମାନଙ୍କ ସାହାଯ୍ୟରେ ନିଜର ବ୍ୟାଙ୍କ ବାଲାନ୍ସ, ଗାଡ଼ି ମୋଟର ପ୍ରାସାଦ ସଂଖ୍ୟା ବଢ଼େଇ ଚାଲନ୍ତି । ଅନ୍ୟପକ୍ଷରେ ଏଇ ରତ୍ନାକର ଆପେ ଆପେ ଚାଲୁଥିଲେ ଏମାନଙ୍କ ପଛେ ପଛେ ଦଳେ ଭଡାଟିଆ ଶ୍ୱେତ ରତ୍ନାକର କି

ଜୟ, ଶ୍ୱେତ ରତ୍ନାକର କି ଜୟ ବୋଲି ଚିତ୍କାର କରୁଥାଆନ୍ତି । ଏଇ ଜୟଜୟ କାର ଧ୍ୱନି ଅନ୍ତତଃ ପ୍ରତିଦିନ ଥରେ ଦି ଥର ନ ଶୁଣିଲେ ଏଇ ଶ୍ୱେତ ରତ୍ନାକରମାନଙ୍କ ଆଖିକୁ ନିଦ ଆସେ ନାହିଁ । ଏଣୁ ଚାଲ ଆମେ ବି କହିବା – ଶ୍ୱେତ ରତ୍ନାକର କି ଜୟ ।

●

# ସୋନିଆ...... ସାନିଆ

ଏବେ ଏବେ ଜଣାଯାଇଛି ବିଶ୍ୱର ଶକ୍ତିଶାଳୀ ମହିଳାମାନଙ୍କ ତାଲିକାରେ ଆମ କଂଗ୍ରେସ ଅଧକ୍ଷା ସୋନିଆ ମାଡାମ୍ ନିଜର ସ୍ଥାନ ରଖିପାରି ନାହାନ୍ତି । ଅଥଚ ପୂର୍ବବର୍ଷ ତାଲିକାରେ ସେ ପ୍ରଥମ ପାଞ୍ଚଜଣଙ୍କ ଭିତରେ ଥିଲେ । ଅବଶ୍ୟ ଏକା ସୋନିଆଜୀଙ୍କ ଏ ଅବସ୍ଥା ହୋଇନାହିଁ । ବୁଶ୍, କ୍ଲିଣ୍ଟନ୍‌ଙ୍କ ଧର୍ମପତ୍ନୀମାନେ ମଧ୍ୟ ତଳକୁ ଖସି ଯାଇଛନ୍ତି ।

କିନ୍ତୁ ଭାଗ୍ୟ ଦେଖନ୍ତୁ ଆମର ଟେନିସ୍ ତାରକା ସାନିଆ ମୀର୍ଜା ଏବେ ବିଶ୍ୱରେ ୪୭ତମ ସ୍ଥାନ ଅର୍ଥାତ ପ୍ରଥମ ପଚାଶ ଜଣଙ୍କ ଭିତରେ ସେ ନିଜର ସ୍ଥାନ ଜମାଇ ପାରିଛନ୍ତି । କେଇଦିନ ତଳେ ତାଙ୍କର ସ୍ଥାନଥିଲା ୫୮ ଏବେ ଏବେ ସେ ୪୭ତମ ସ୍ଥାନକୁ ଉତ୍ତୀର୍ଣ୍ଣ ହୋଇ ପାରିଛନ୍ତି । ଧନ୍ୟ କହିବା ଭାଗ୍ୟକୁ ।

ସେଥିପାଇଁ କୁହାଯାଏ ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର । ଏହି ଉକ୍ତିରୁ ଆମ ମନକୁ ଆଉ ଗୋଟେ କଥା ଚଟ୍‌କରି ଆସିଗଲା । ଆମର ଜଣେ ବ୍ୟକ୍ତି– ମୁଖ୍ୟମନ୍ତ୍ରୀ ଥିଲେ । ଏବେ ନାହାନ୍ତି । ସେ ଏବେ ଏବେ ଯାଇ କଲିକତାରେ ଉତ୍କଳ ଭବନରେ ରହିଥିଲେ । ହେଲେ ତାଙ୍କ ମନଟା ଆମ୍ବିଳା ଆମ୍ବିଳା ଲାଗିଲା । କାରଣ ସେ ଅନୁଭବ କଲେ; ଲକ୍ଷ୍ମୀ ଠାକୁରାଣୀ ଶ୍ରୀମନ୍ଦିର ଛାଡ଼ି ଚାଲିଯିବାପରେ ଜଗନ୍ନାଥ ବଳଭଦ୍ରଙ୍କ ନିଦ ଭାଙ୍ଗିଲା ବେଳକୁ ପଣ୍ଡା ପଡ଼ିହାରୀମାନଙ୍କ ସୋର ଶବଦ କିଛି ଶୁଭିଲାନାହିଁ । ଉଭୟେ ଜଗାବଳିଆ ତାଟକା ହୋଇ ପରସ୍ପରକୁ ଅନାଅନି ହେଲେ ।

ଠିକ୍ ସେହିପରି ଉତ୍କଳ ଭବନରେ ଆମର ଦୁଇ ପୂର୍ବତନ ମୁଖ୍ୟମନ୍ତ୍ରୀ ସକାଳ ହେଲା ବେଳକୁ କାହାରିକୁ ନଦେଖିବାରୁ ନିଜ ନିଜ କପାଳରେ ହାତ ମାରିଲେ । ଏପରିକି ଚାହା ଦେବାପାଇଁ ଆଟେଣ୍ଡେଣ୍ଟ ବି ଟିକେ ତତ୍ପରଥିବା ଭଳି ମନେ ହେଉନଥାଏ ।

ତଦୃଶ୍ୟ ଦେଖି ଉଭୟେ ନିଶ୍ଚୟ ମନେ ମନେ କହୁଥିବେ ହାଇରେ ଦଇବ କି କଲୁ .... ନମାରି ଯା ଦର୍ମରା କରି ରଖିଲୁ ।

# ମୁଁ ଓ ମୋ ସ୍ତ୍ରୀ

୧୯୫୮ ମସିହା କଥା । ମୁଁ ମ୍ୟାଟ୍ରିକ୍ ପାଶ୍ କଲାପରେ ମୋର ବିଭାଘର । ମୁଁ ଭଲ ପାଠ ପଢୁଥାଏ, ଭଲଚିତ୍ର ଆଙ୍କୁଥାଏ । ଏକଥା କାଳେ ମୋ ଶ୍ୱଶୁରଙ୍କ କାନକୁ ଗଲା । ସେ ଥରେ ଆମ ଘରବାଟ ଦେଇ ଗଲାବେଳେ ମୁଁ ଆମ ମାଟିକାନ୍ଥରେ ବତ୍ରିଶ ସିଂହାସନ କଥାରୁ ପିତୁଳାମାନଙ୍କ ଛବି ଦେଖି ଆଙ୍କୁଥିଲି । ତା ପରେ ପରେ ସେ ତାଙ୍କ ଘର କବୀରପୁର ଗଲେ । ତାଙ୍କର ଗୁମାସ୍ତା ମଦନମହାନ୍ତିଙ୍କୁ ଆମ ଘରକୁ ବିବାହ ପ୍ରସ୍ତାବ ଦେଇ ପଠାଇଲେ । ମାଟ୍ରିକ୍ ପାସ ପରେ ମୋର ସାର୍ଟିଫିକେଟ ବୟସ ୧୬ କିନ୍ତୁ ପ୍ରକୃତ ବୟସ ୧୮ । ଏଣୁ ସଦାବେଳେ ମୁଁ କହେ ଯୌବନର ଜନ୍ମ ପୂର୍ବରୁ ମୋର ବିବାହ । ହଁ କଥା ଛାଡ଼ିଗଲି । ଗୁମାସ୍ତା ଆସିଲେ । କଥା ଛିଡ଼ିଲା । ଯୌତୁକ ବାବଦକୁ ମୋତେ ସିଏ ପ୍ରଥମେ ଆଏ.ଏସ୍. ସି ପଢ଼ାଇବେ । ତାପରେ ମୁଁ ଯାହା ଚାହିଁବି ଡାକ୍ତରୀ କିମ୍ବା ଇଂଜିନିୟରିଂ ମଧ୍ୟ ପଢ଼ିବି । ଯୌତୁକ ବ୍ୟାଧିଟା ବହୁଆଗରୁ ବୋଧେ ଦେଖାଦେଲାଣି । ବାହାଘରବି ହୋଇଗଲା । ଘରଣୀ ବି ଆସିଲେ । ମୁଁ ଭାବି ନଥିଲି ଲୋଭପଣରେ କିଭଳି ଚତୁରପଣିଆ ଛପି ରହିଥିଲା । ବାହାଘରକୁ ମୁଁ ଭାବି ଶ୍ୱଶୁର ଘରକୁ ଯାଇଥାଏ । ବିବାହ ସରିଲେ ହାତଗଣ୍ଠି ପଡ଼ିଲେ ସିନା ଶ୍ୱଶୁର ହେବେ । ସେ ଯାହାହେଉ ମୋର ସଦାବେଳେ ଡିସେଣ୍ଟ୍ରି ଦୋଷ । ବରବେଶ ହୋଇଗଲା ବେଳେ କୁଆଖିଆ ପାଖରେ ଗରମ ଗରମ ଛେନାଗଜା ଖାଇଥିଲି । ସେତେବେଳେ କୁଆଖିଆରେ ମାତ୍ର ଗୋଟିଏ ଚାଳଘର ଦୋକାନଥାଏ । ଆଜି କୁଆଖିଆ ଏକ ବିରାଟ ବଜାର । ଗରମ ଗରମ ଛେନାଗଜା ଖାଇଥିବାରୁ ପେଟ ଗଣ୍ଡଗୋଳ ହେଲା । ରାତିରେ ଦୁଇ ଦେଖେଇଲା । ସଂଗରେ ଯାଇଥିବା ବାରିକଟି ଗୋଟେ ନୋଟା ମାଗିଲା । ହେଲେ ସେତେବେଳେ ଶ୍ୱଶୁରଘର କେହି ଜାଗିନଥିଲେ ବି ମୋର ଭାବୀ ସ୍ତ୍ରୀ ଜାଗିଥିଲେ । ସେ ମୁହଁ ଛିଞ୍ଚାଡ଼ି କହିଲେ ଏଠି ନୋଟା ଫୋଟା କିଛିନାହିଁ । ପରବର୍ତ୍ତୀ ପର୍ଯ୍ୟାୟରେ ଯେତେବେଳେ ଆମଘରେ ମୁଁ ପଚାରେ ସମସ୍ତେ ଶୋଇଥିବା ବେଳେ ତୁମେ ଚେଇଁଥିଲ କାହିଁକି । ସେ କହନ୍ତି ବାହାଘର ଗଣ୍ଡଗୋଳିଆରେ ସବୁ ଜିନିଷ ଏଣେତେଣେ ପଡ଼ିଥିବା ବେଳେ ମୁଁ ଜଗିବିନିତ ଜଗିବ କିଏ ? ମୁଁ ତ ଘର ଦୁଆର ହାନୀଲାଭ ସବୁ ବୁଝୁଥିଲି । ବାହାହୋଇଯିବି ବୋଲି ବାପଘର କଥା ଏକଦମ୍ ଭୁଲିଯାଇ ଥାଆନ୍ତି ନା କଣ ? ସତରେ ଏମିତି ଝିଅ କେତେ ଜଣ ମିଳିବେ । ଦେଖିଲେ ତ ଆଜ୍ଞା ! ମଫସଲି ଝିଅକୁ ଆମେ ବୋକି କହନ୍ତି ସିନା କିନ୍ତୁ ସେମାନଙ୍କ ଭିତରେ ବି ଘରକରଣା ବୁଦ୍ଧି ଆଉ ଚତୁରପଣିଆ ବେଶ ଥାଏ ।

✷

# ମୀରା ବନାମ ମୀରା

**ମୀ**ରାଙ୍କ ପରି କୃଷ୍ଣଭକ୍ତ କମ୍ ଦେଖିବାକୁ ମିଳନ୍ତି । ଦ୍ୱାପର ଯୁଗରେ ରାଧାଙ୍କ ପରି କଳିଯୁଗରେ ରାଜପୁତ ରମଣୀ ମୀରା ବେଶ୍ କୃଷ୍ଣପ୍ରେମୀ ଭକ୍ତଥିଲେ । ଗିରିଧର ଗୋପାଳ ନନ୍ଦଲାଲଙ୍କ ନାମରେ ସେ ସୁମଧୁର କଣ୍ଠରେ ଭଜନମାନ ଗାଇ ଶ୍ରୋତାଗଣଙ୍କୁ ଚମତ୍କୃତ କରୁଥିଲେ । ଏପରିକି ମେବାର ରାଣା ତାଙ୍କୁ ମାରିଦେବା ଲାଗି ଚକ୍ରାନ୍ତ କରି ଉତ୍କଟ ବିଷ ପାନ କରାଇଥିଲେ । କିନ୍ତୁ ଭକ୍ତ ମୀରାଙ୍କ ପ୍ରଗାଢ଼ ଭକ୍ତିଭାବ ଓ ବିଶ୍ୱାସ ପାଖରେ ବିଷ ବି ଅମୃତ ପାଲଟିଗଲା । ଏଣୁ ଯୁଗେ ଯୁଗେ ମୀରା ଭକ୍ତ ମୀରା ନାମରେ ପରିଚିତା । ଏବେ କଳିଯୁଗରେ ଆଉ ଜଣେ ଚିତ୍ରତାରକା ମୀରା ମଧ୍ୟ ବେଶ୍ ଚର୍ଚ୍ଚିତା ହୋଇଛନ୍ତି । ମିବାରର ମୀରାବାଈ ସୁଲଳିତ ଗୀତ ଗାଇ ଯେପରି ଶ୍ରୋତାଙ୍କୁ ଚମତ୍କୃତ କରୁଥିଲେ ପାକିସ୍ତାନୀ ଚିତ୍ରତାରକା ମୀରାଙ୍କ ଭାରତୀୟ ହିରୋ ଅସ୍ମିତ୍ ପଟେଲଙ୍କୁ ଚୁମ୍ବନ ଦେବାର ଦୃଶ୍ୟ ପାଇଁ ବେଶ ଚର୍ଚ୍ଚିତ । ସେ ଚୁମ୍ବନ ଦେଲାବେଳେ ଏମିତି ମତୁଆଲା ହୋଇଗଲେ ଯେ, କେତେ ଚୁମ୍ବନ ଦେଇଛନ୍ତି ହୁଏତ ଜାଣି ପାରି ନାହାନ୍ତି । ତେବେ ସେ ଯାହାହେଉ ମନ୍ଦିର ତୋଳିଲେ ନାଆଁ ପଡ଼େ ନଚେତ୍ ବାଟରେ ମଳତ୍ୟାଗ କଲେ ନାଆଁ ପଡ଼େ । ଏଣୁ ନାଆଁ ପଡ଼ିଲାତ । ଉଭୟ ମୀରା ରୁଚିରେ ଯେପରି ଅଲଗା ନାଆଁ ପଡ଼ିବା କ୍ଷେତ୍ରରେ ସେମିତି ଅଲଗା ।

ତେବେ ଚିତ୍ର ଜଗତରେ ହେଉ କି ଆଲବମ୍ କ୍ଷେତ୍ରରେ ହେଉ ଏଇ ଓଷ୍ଠ ସେବା ବେଶ୍ କିଛି ଆଲୋଚନା ସାଙ୍ଗକୁ ପରୀକ୍ଷା ନୀରିକ୍ଷା ବି ଚାଲିଛି । କେଉଁ ପ୍ରକାର ଓଷ୍ଠ ସେବାରେ କେଉଁ ପ୍ରକାର ଆନନ୍ଦ ମିଳିବ । କେଉଁ ପ୍ରକାର ଓଷ୍ଠ ସେବାରେ କେତେ ବେଳଯାଏ ସେ ତିଷ୍ଠି ରହିବ । କେତେ କାଲୋରୀ ଯୌନଶକ୍ତି ବୃଦ୍ଧିପାଇବ ଏନେଇ ତର୍ଜମା ହେବା ମଧ୍ୟ ଆବଶ୍ୟକ ।

ମୀରାଙ୍କ ନଜର ଫିଲ୍ମରେ ଏହି ଚୁମ୍ବନର ଚୁମ୍ବକୀୟ ଝଡ଼ ପାକିସ୍ତାନ ମୌଳବାଦୀଙ୍କ ଆଖିରୁ ଯେମିତି ନିଦ ହଜେଇ ନେଇଛି ଏଇ ନଜରରେ ନଜର ପଡ଼ିବା ପାଇଁ ଆମ ଯୁବ ଗୋଷ୍ଠୀ ମଧ୍ୟ ବେଶ୍ ଆତୁର ହୋଇ ପଡୁଛନ୍ତି ।

ଦେଖାଯାଉ କଉ ପାଣି କୁଆଡେ ଯାଉଛି ।

✷

# ପରୀକ୍ଷା ଫିସ୍ ଓ ନିରୀକ୍ଷା ଫିସ୍

ଆମ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷା ସରିଯାଇଛି । ଏଇ ପରୀକ୍ଷା ଚାଲିଥିବା ବେଳେ କେଉଁଠି ଆବଶ୍ୟକ ପ୍ରଶ୍ନ ପତ୍ରର ଅଭାବ ଦେଖାଦେଇଛି ତ କେଉଁଠି ଇଂରାଜୀ ପରୀକ୍ଷାଥିବାବେଳେ ବିଜ୍ଞାନ ପ୍ରଶ୍ନ ପତ୍ର ଖୋଲାଯାଇଛି । ଏ ସବୁ କାଁ ଭାଁ ବିଭ୍ରାଟ ହେବ ହିଁ ହେବ । କାରଣ ମଣିଷ ମାତ୍ରେକେ ଭୁଲ କରିବା ସ୍ୱାଭାବିକ । ଏବେ ଅବଶ୍ୟ ମଣିଷ ନିଜ ଉପରୁ ଭରସା ହରାଇ କମ୍ପ୍ୟୁଟରେ ଦ୍ୱାରା କାର୍ଯ୍ୟ ହାସଲ କରୁଛି ।

ତେବେ ଏବେ ସେ କଥାକୁ ନଯାଇ ଆମ ଟପିକ୍‌କୁ ଯିବା । ଏବେ ପିଲାଙ୍କ ପରୀକ୍ଷା ଫିସ୍ ଯଥେଷ୍ଟ ବଢ଼ିଯାଇଛି । କାରଣ ପ୍ରଶ୍ନ ପତ୍ର ପାଇଁ ଆବଶ୍ୟକ କାଗଜ ଓ ମୁଦ୍ରଣ ଦରବୃଦ୍ଧି ପାଇଛି । ତେବେ ସେଇ ତୁଳନାରେ ପ୍ରଶ୍ନପତ୍ର ନିର୍ମାଣ କାରୀଙ୍କ ଫିସ୍ ବୃଦ୍ଧି ପାଇଛି କି ନା ଆମେ ଜାଣୁନା । ତେବେ ନିରୀକ୍ଷକ ଫି ବା ଇନ୍‌ଭେଜିଲେସନ୍ ଫି ଆମେ ଶୁଣିଛୁ ପ୍ରତି ସିଟିଂକୁ ୧୨ ଟଙ୍କା । ଅନ୍ୟ କଥାରେ କହିବାକୁ ଗଲେ ଜଣେ ଦୁଇଟି ସିଟିଂ କଲେ ବି ୨୪ ଟଙ୍କା ପାଇବ । ଯାହାକି ଜଣେ ଅଣକୁଶଳୀ ଶ୍ରମିକର ଏକ ତୃତୀୟାଂଶ ମଜୁରୀ ସଂଗେ ସମାନ । ଏଣୁ ଯେତେବେଳେ ଇନ୍‌ଭିଜିଲେଟ୍‌ର ଜଣକ ତାର ଏଇ ପ୍ରାପ୍ୟ କଥା ଭାବିବ ସେ ଅନ୍ୟମାନଙ୍କ ଭଳି ଏଇ ପରୀକ୍ଷା ଚାଲିଥିବା ବେଳେ କିଛି ଅଧିକ ପ୍ରାପ୍ୟର ବ୍ୟବସ୍ଥା କରିପାରିଲେ ତ ଆନନ୍ଦର କଥା । ଅବଶ୍ୟ ନିରୀକ୍ଷକଙ୍କ ଭିତରେ କିଛି ସାଧୁ ଆଉ କିଛି ବୋକା ମଧ୍ୟ ଥାଆନ୍ତି ଯେଉଁମାନେ ନିଜର ନୈତିକତା ରକ୍ଷା ପାଇଁ ହେଉ ବା ଭୟ କରି ହେଉ ସେସବୁରେ ଆଗେଇ ପାରନ୍ତି ନାହିଁ ।

କେଉଁଠି କେଉଁଠି ଶୁଣାଯାଏ, ଗୋଟିଏ ଗୋଟିଏ କେନ୍ଦ୍ର ପରୀକ୍ଷାର୍ଥୀଙ୍କଠାରୁ ଉନ୍ନୟନ ପାଣ୍ଠି ଗଠନପାଇଁ ଏଭଳି ପ୍ରାପ୍ୟ ଆଦାୟ କରି ପ୍ରତିବଦଳରେ ନିର୍ବାଚନ ବୈତରଣୀ ପାର ହେବା ପାଇଁ ଡଙ୍ଗା ଆହୁଲା ଯୋଗାଇବାରେ ବନ୍ଦୋବସ୍ତ କରନ୍ତି । ଏହି ଅଲିଖିତ ଆଦାୟରୁ ପଦବୀ ଅନୁସାରେ ପଣି ବଣ୍ଟନ ପରେ ଯାହା ବଳେ ଅନୁଷ୍ଠାନର ଉନ୍ନତି କଳ୍ପେ ର-୦ କରି କିଛି କାର୍ଯ୍ୟ କରାଯାଏ । ଗୋରୁ ମାରି ଯୋତାଦାନ କଥା ତ ରହିଛି ।

ଆଜ୍ଞା ଏଇଟା ଗୋଟେ ବଡ଼ ଅପରାଧ ନୁହେଁ । କାରଣ ସରକାର ସ୍ଥିର କଲେ ଅନୁଷ୍ଠାନକୁ ଅନୁଦାନ ଦେବାକୁ ହେଲେ ସେ ଅନୁଷ୍ଠାନରୁ ଅତି କମ୍‌ରେ ଅଧା ପିଲା ପାଶ୍ କରିବା ଦରକାର । ଏଣୁ ଅଧା ପିଲା ହେଉ କି ପୁରା ପିଲା ହେଉ ପାଶ୍ କରେଇବା ପାଇଁ ଅନୁଷ୍ଠାନର ଶିକ୍ଷକଙ୍କ ଠାରୁ ଆରମ୍ଭ କରି ପଢୁଥିବା ପରୀକ୍ଷାର୍ଥୀଙ୍କ ଅବିଭାବକମାନେ ପରୀକ୍ଷା କେନ୍ଦ୍ରରେ ଲାଗିପଡ଼ିବା

ସ୍ୱାଭାବିକ୍ । ଏଥିପାଇଁ ଅବଶ୍ୟ ବେଳେ ବେଳେ ସ୍ୱାଡମାନଙ୍କୁ ତୋଷଣ କରିବାପାଇଁ ନାନା ଖଦ୍‌ରା ଉଠେଇବାକୁ ପଡ଼େ ।

ତେବେ ସେ ଯାହା ହେଉ ଆମର ସାକ୍ଷରତା ହାର ବୃଦ୍ଧି ନିହାତି ଆବଶ୍ୟକ । ସର୍ବଶିକ୍ଷା ଅଭିଯାନ ସଫଳ ହେବା ଚାହି । ଏଣୁ ବ୍ୟବସ୍ଥା ଭିତରେ କିଛି ଅବ୍ୟବସ୍ଥା ଆଦୌ ଧର୍ତ୍ତବ୍ୟ ଅପରାଧ ନୁହେଁ ।

●

# ଅମୃତ କଳସର ବ୍ୟବହାର କର

ଗତ ତା ୨୮-୧୧-୦୪ ରିଖରେ ସୋରକୁ କୌଣସି ଏକ ସାରସ୍ୱତ ଅନୁଷ୍ଠାନରେ ଯୋଗଦେବା ପାଇଁ ଭଦ୍ରକରୁ ଟ୍ରେକର ଚଢ଼ିଲି । ଟ୍ରେକରଟି ବିଶେଷ ଭିଡ଼ନଥାଏ । ସୌଭାଗ୍ୟକୁ ଅଧିକ ଯାତ୍ରୀ ଆଗମନକୁ ଅପେକ୍ଷା ନକରି ଡ୍ରାଇଭର ଗାଡ଼ି ଚଳାଇଲେ । ଅବସ୍ୟ ସେ ସମୟଟା ମଧାହ୍ନ ୧୨ଟାରୁ ଗୋଟାଏ ସମୟ । ଏଣୁ ଯାତ୍ରୀ ବୋଧେ ହୁଅନ୍ତିନାହିଁ । ଏହା ଜାଣି ଟ୍ରେକରଟି ଆଗକୁ ମାଡ଼ି ଚାଲିଲା । ମୋର ସହଯାତ୍ରୀ ଭିତରେ କେତେଜଣ ମହିଳା ମଧ୍ୟ ଥାଆନ୍ତି । ଶିଶୁଟି ମା କୋଳରେ ବେଶ ହସି ଖେଳି ଚାଲିଥାଏ । ମୁଁ ମଝିରେ ମଝିରେ ମାଆ ଛୁଆଙ୍କ ଲୀଳାଖେଳା ଦେଖି ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା ଆଉ ଯଶୋଦାଙ୍କର ବାତ୍ସଲ୍ୟ କଥା ମନେ ପକାଇ ଚାଲିଥାଏ । ଶୀତ ଦିନ ହେଲେବି ଭୀଷଣ ଖରା ଯୋଗୁଁ ଟିକେ ଆଶ୍ୱସ୍ତି ଲାଗୁଥାଏ । ଗାଡ଼ିଟି ମାର୍କୋଣା ହେଲାବେଳେକୁ ସେଇ ଛୋଟ ପିଲାଟି ଭୀଷଣ କାନ୍ଦିବାରେ ଲାଗିଲା । ଶିଶୁଟିର କାନ୍ଦଣା ଦେଖି ଏକା ମୁଁ କାହିଁକି ସମସ୍ତ ଯାତ୍ରୀ ବ୍ୟସ୍ତ ହୋଇପଡିଲେ । ଦୁଗ୍ଧପୋଷ୍ୟ ଶିଶୁଟି ତୃଷାର୍ତ୍ତ ହୋଇ ମା କ୍ଷୀର ପିଇବାକୁ ବ୍ୟସ୍ତ ହୋଇପଡୁଥାଏ । ମାତ୍ର ସେଇ ନିଷ୍ଠୁରା ମାଆଟି ନା ଶିଶୁଟିକୁ କ୍ଷୀରପାନ କରାଉଥାଏ ନା ଜଳ ଟିକେ ଦେଉଥାଏ । ଅନ୍ୟପକ୍ଷରେ ନିଜର କୁନ୍ତଳ ସଜାଡ଼ିବା, ପତି ସହ ହସଖୁସିରେ ମାତିଥାଏ । ମାଆ କୋଳରେ ଯେଉଁ ପିଲା କାନ୍ଦି କାନ୍ଦି ଅଥୟ ସେ କଣ ବାପା ପାଖରେ ଚୁପ୍ ରହିପାରେ ? ଏଣୁ ବାପାର ନିଷ୍ଫଳ ପ୍ରୟାସ ପିଲାଟିକୁ ଶାନ୍ତ କରିପାରିଲାନି । ମୋର ମନେ ହେଉଥାଏ କହିଦେବାକୁ ମାଆ ପିଲାପାଇଁ ଦୁଇଟି ଅମୃତ କଳସ ତୁମ ବକ୍ଷରେ ସାଇତି ରଖିଛ । ତାକୁ ଅମୃତ ପାନ କରିବାକୁ ସୁଯୋଗ ଦିଅ ସେ ଚୁପ୍ ହୋଇଯିବ । ତଥାପି ଶୁଣେଇ ଶୁଣେଇ କହିଲି ଆଜିର ଆଧୁନିକା ରମଣୀମାନେ ଶିଶୁ ମନସ୍ତତ୍ତ୍ୱକୁ ଭୁଲିଯାଇ କେବଳ ସୌନ୍ଦର୍ଯ୍ୟ ତତ୍ତ୍ୱରେ ବୁଡ଼ି ରହିଲେଣି । ଯୁବତୀ ତ ତା ଦୁଗ୍ଧପୋଷ୍ୟ

ଶିଶୁ ସ୍ୱାମୀ ସହ ଜାମୁଝାଡ଼ିରେ ଓହ୍ଲାଇଗଲେ । ମୁଁ ଏବଂ ଅନ୍ୟ ସହଯାତ୍ରୀ ଅନ୍ୟ ଏକ ଟ୍ରେକରଯୋଗେ ସୋର ଅଭିମୁଖେ ଯାତ୍ରା ଆରମ୍ଭ କଲୁ । ମନେ ମନେ ଭାବୁଥାଏ ଆଜିର ନାରୀ କେବଳ ସୌନ୍ଦର୍ଯ୍ୟ ନଷ୍ଟ ଭୟରେ ଶିଶୁକୁ ଦୁଗ୍ଧପାନ କରାଉ ନାହାନ୍ତି । ଅଥଚ ମାଆର କ୍ଷୀର ଶିଶୁପାଇଁ ଅମୃତ ତୁଲ୍ୟ ଏକଥା ଭୁଲି ଯାଇଛନ୍ତି । ଏଣୁ ହେ ମୋର ଆଧୁନିକା ମାଆ ଭଉଣୀମାନେ ତୁମକୁ ଭଗବାନ ଦେଇଥିବା ଅମୃତ କଳସର ଅପବ୍ୟବହାର କରନା ।

●

# ୱାରେଣ୍ଟ ଯୁଗ

ଯୁଗ ଚାରିପ୍ରକାର ବୋଲି ଆମେ ପୁରାଣରୁ ଜାଣିଛେ – ସତ୍ୟ, ତ୍ରେତୟା, ଦ୍ୱାପର ଓ କଳି । ସତ୍ୟ ଯୁଗରେ ମଣିଷର ଉଚ୍ଚତା ୨୧ ହାତ, ତ୍ରେତୟାରେ ମଣିଷର ଉଚ୍ଚତା ୧୪ହାତ, ଦ୍ୱାପରରେ ୭ ହାତ ଏବଂ କଳି ଯୁଗରେ ସାଢ଼େ ତିନିହାତ । ସେହିପରି ସତ୍ୟ ଯୁଗରେ ପୁରା ୪ଭାଗ ଯାକ ଧର୍ମ, ତ୍ରେତୟାରେ ତିନିଭାଗ ଧର୍ମ ଏକ ଭାଗ ପାପ, ଦ୍ୱାପରରେ ଫିପ୍‌ଟି ଫିପଟି, ଆଉ କଳିରେ ପାପର ଫୁଲ୍ ବୋବାଲ । କାଁ ଭାଁ ଧର୍ମଟିକେ ଲୁଚି ଛପି ଡରିମରି ଥାଏ ତାହା ପୁଣି ଏକଭାଗ ଠାରୁ କମ୍ ହୋଇପାରେ ।

ଆଉ ଗୋଟିଏ ଦିଗରୁ ସାହିତ୍ୟରେ ବିଭିନ୍ନ ଯୁଗର ବର୍ଣ୍ଣନା ଅଛି । ଇଂରେଜୀ ସାହିତ୍ୟରେ ରୋମାଣ୍ଟିକ୍ ଯୁଗ, ଭିକ୍ଟୋରିଆନ୍ ଯୁଗ, ମଡର୍ଣ୍ଣ ଯୁଗ । ଓଡ଼ିଆ ସାହିତ୍ୟରେ ପ୍ରାଚୀନ ଯୁଗ, ମଧ୍ୟଯୁଗ,(ରୀତିଯୁଗ) ବା ଆଧୁନିକ ଯୁଗ । ଏହାଛଡ଼ା ସବୁଜ ଯୁଗ, ପଞ୍ଚସଖା ଯୁଗ ଭଳି କିଛି କିଛି ଉପଯୁଗର କଥା କୁହାଯାଏ ।

ଏବେ କିନ୍ତୁ ଆଉ ଗୋଟିଏ ନୂଆ ଯୁଗର କଥା ଚାଲିଛି । ଏଇଟି ହେଲା ୱାରେଣ୍ଟ ଯୁଗର କଥା । କଥା କଥାକେ ଏବେ ୱାରେଣ୍ଟ । କେଉଁଠି ଜାମିନ୍ ରହିତ ପରୱାନା ତ କେଉଁଠି ଯାମିନ୍ ସହିତ ପରୱାନା । ଛୋଟକାଟର ଚୋରି ବଟକାରୀ କରୁଥିବା ଦାଗୀମାନଙ୍କ ଠାରୁ ଆରମ୍ଭ କରି ବଡ଼ବଡ଼ ସ୍କାମ ଏପରିକି ନରହତ୍ୟା କରୁଥିବା ବ୍ୟକ୍ତିଙ୍କ ପଛରେ ୱାରେଣ୍ଟ ଘୁରି ବୁଲୁଛି । ଜେଲ ଗୁଡ଼ିକରେ ଏବେ ସ୍ଥାନର ବହୁତ ଅଭାବ ଜେଲରମାନେ ବ୍ୟତିବ୍ୟସ୍ତ । ଏଣୁ ଯେତେ ଚୋର ତସ୍କର ଧରା ନପଡ଼ି ସମାଜରେ ମୁକ୍ତ ଭାବରେ ଘୁରି ବୁଲୁଛନ୍ତି ଜେଲରଙ୍କ

ମୁଣ୍ଡ ସେତେ ହାଲକା ଏହି କାରଣରୁ ମୁକ୍ତ ପ୍ରାକୃତିକ ପରିବେଶରେ ଚିଡ଼ିଆଖାନା । ଠିକ୍ ସେହିପରି ମୁକ୍ତାକାଶ ଜେଲର ପରିକଳ୍ପନା କରାଯାଇଛି ।

ତେବେ ୱାରେଣ୍ଟ ଯୁଗର ଏକ ଯୁଗାନ୍ତକାରୀ ପଦକ୍ଷେପ ସ୍ୱରୂପ ଜଣେ ବିଚାରପତି ଓକିଲ ଜରିଆରେ ମାତ୍ର ଚାଳିଶ ହଜାର ଟଙ୍କା ନେଇ ଆମ ରାଷ୍ଟ୍ରପତି ଡଃ. ଏ.ପି.ଜେ. ଅବଦୁଲ୍ କଲାମ୍ ନାମଧାରୀ ବ୍ୟକ୍ତି ସୁପ୍ରିମ୍ କୋର୍ଟର ମୁଖ୍ୟ ବିଚାରପତିଙ୍କ ନାମଧାରୀ ଏନ୍. ଖାରେ ଏବଂ ଅନ୍ୟଜଣେ ପଦସ୍ଥ ବ୍ୟକ୍ତି ନାମଧାରୀ ଆର. କେ. ଜୈନ୍ୟଙ୍କ ନାମରେ ଗିରଫ ପରୱାନା ବା ୱାରେଣ୍ଟ ଜାରି କରିଛନ୍ତି । ଏଥିପାଇଁ ଦେଶର ସର୍ବୋଚ୍ଚ ନ୍ୟାୟାଳୟ ମଧ୍ୟ ବିବ୍ରତ ହୋଇ ଗୁଜରାଟ (ଅହମଦାବାଦ୍‌ର) ସହର ମେଟ୍ରୋ ପଲିଟାନ୍ ଜଜ୍‌ଙ୍କ ବିପକ୍ଷରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଛନ୍ତି ।

ଏଇ ଗୋଟିଏ ଘଟଣାରୁ ସ୍ପଷ୍ଟ ପ୍ରତୀୟମାନ ଯେ, କଳିଯୁଗରେ ପାପର ପ୍ରଭାବ ବଢ଼ିଲାପରି ଏବେ ବିଚାର ଯୁଗରେ ୱାରେଣ୍ଟର ଇତିହାସ ବହୁ ଚର୍ଚ୍ଚିତ ହୋଇପଡ଼ିଛି । ଏଣୁ ଏ ଯୁଗକୁ ବିଜ୍ଞାନଯୁଗ ନକହି ୱାରେଣ୍ଟର ଯୁଗ ବୋଲି କହିଲେ ଭୁଲ୍ କେଉଁଠି ।

●

# ମିଛ ମହାତ୍ମା ଉପାଖ୍ୟାନ

**ବ**ହୁ ଦିନରୁ ଆମେ ଗାନ୍ଧିଙ୍କ ଜୟଗାନ ଭୁଲିଗଲେଣି । ଆମ ଗାନ୍ଧି କହିଲେ ଆମେ ମହାତ୍ମାଗାନ୍ଧିଙ୍କୁ ହିଁ ବୁଝୁଥିଲେ । ଏବେ ଗାନ୍ଧି କହିଲେ – ଇନ୍ଦିରା ଗାନ୍ଧି, ରାଜୀବ ଗାନ୍ଧି, ଏପରିକି ରାହୁଲ ଗାନ୍ଧି ପର୍ଯ୍ୟନ୍ତ ଭାବି ନିଅନ୍ତି କାଁ ଭାଁ ମେନକା ଗାନ୍ଧିଙ୍କ ନାଆଁ ମଧ୍ୟ ଶୁଣାଯାଏ ପଶୁପକ୍ଷୀଙ୍କୁ ଦୟା ଦେଖେଇଲା ବେଳେ ।

ତେବେ ସେ ଯାହା ହେଉ ଏଇ କେଇଦିନ ହେଲା ମହାତ୍ମାଗାନ୍ଧିଙ୍କ ଜୟ ବଦଳରେ ମିଛ ମହାତ୍ମାଗାନ୍ଧିଙ୍କ ଜୟ ବଦଳରେ ମିଛ ମହାତ୍ମାକୁ ବର୍ଜନକର ଧ୍ୱନି ଚାରିଆଡ଼େ ଶୁଣାଯାଉଛି । ଆମେ ଅନୁସନ୍ଧାନ କରି ଜାଣିଲୁ ଏଇ ମିଛମହାତ୍ମା ପ୍ରକୃତରେ ମହାତ୍ମା ଗାନ୍ଧି ନୁହନ୍ତି । ମହାତ୍ମାଙ୍କ ଜୀବନ ଚରିତ୍ରକୁ ନେଇ ଏକ ବହିର ନାମ । ଏ ବହିର ଲେଖକ କାଳେ ଆଗରୁ ଗାନ୍ଧି ଜୀବନ ଉପରେ ଗବେଷଣା କରି ଡକ୍ଟରେଟ୍ ଲାଭ କରିଛନ୍ତି । ତେବେ ଆଳୁ ଖୋଳିବାକୁ ଯାଇ ସାରୁ ମିଳିଲା ପରି । ପୁଣି ସାରୁ ଖୋଳୁ ଖୋଳୁ ମାରୁ ମିଳିଲାପରି ଏ ଅବସ୍ଥା । ଆଗରୁ ଅବଶ୍ୟ ଲେଖକମାନଙ୍କ ଏ ପାଗଳାମିର

ବହୁ ଉଦାହରଣ ଅଛି । କେଉଁ କବି ରାଜକୁମାର ସ୍ନାନକାଳୀନ ନଗ୍ନ ସୌନ୍ଦର୍ଯ୍ୟ ଦେଖି କବିତା ଲେଖିଛି ତ କିଏ ନାରୀର ରତୁସ୍ରାବ ନେଇ ଜାନୁଗିରି ଗୁହାରେ ବାଳଭାନୁ ଉଦୟ ବୋଲି ଲେଖିବାକୁ ଭୁଲିନାହିଁ ।

କିଏ ଇସ୍‌ଲାମ ବିରୋଧି ହୋଇ ଆତ୍ମଗୋପନ କରୁଛି ତ କିଏ ମୁଲ୍ଲାବିରୋଧୀ ବମ୍ ଛାଡ଼ି ସ୍ୱଦେଶରୁ ନିର୍ବାସିତ ହେଉଛି । ଅନେକ ଚର୍ଚ୍ଚିତ ଲେଖା ଲୋକଙ୍କର ଆଦର ପାଇଥାଏ । ନିନ୍ଦିତ ବହିଗୁଡ଼ିକ ପାଠକ ପାଠିକା ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କରିଥାନ୍ତି । ଆମର ପ୍ରକାଶକମାନେ ସଦାବେଳେ ଲେଖକମାନଙ୍କୁ କହିଥାନ୍ତି ବହିରେ ବିକ୍ରିନାହିଁ । ସରକାର ଯାହା କିଣିଛନ୍ତି ପଇସା ଏପର୍ଯ୍ୟନ୍ତ ଦେଉନାହାନ୍ତି । ଏଣୁ ନୂଆ ବହି କିଣିହେଉନି । ଅବଶ୍ୟ ପ୍ରକାଶକମାନେ ଲେଖକଙ୍କୁ ରାଜଭାଗ ଦେବାକଥା ଉଠିଲାବେଳେ ଏହିଭଳି କଥା ଉଠିଥାଏ । ସେହିଭଳି ପତ୍ରିକାର ସମ୍ପାଦକମାନେ ଲେଖକଙ୍କୁ କପିଟିଏ ଡାକରେ ପଠାଇବାକୁ ମଧ୍ୟ କୁଣ୍ଠାବୋଧ କରିଥାନ୍ତି । ଏପରିକି ଗ୍ରାହକମାନେ ବାଧ୍ୟହୋଇ ବେଳେ ବେଳେ ପୁଣି ପଇସା ଦେଇ ବାହାରୁ ପତ୍ରିକା କିଣିଥାନ୍ତି ।

ଏ ସବୁକୁ ଆଖି ଆଗରେ ରଖି ମିଛ ମହାତ୍ମାକାର ଆମ ଓଡ଼ିଆ ପାଠକ ସମାଜକୁ ଜାଗ୍ରତ କରିବା ଉଦ୍ଦେଶ୍ୟ ରଖି କଣ ଏପରି ବହି ଲେଖିଛନ୍ତି । ଦେଖନ୍ତୁ ଏଇ ଚିନ୍ତାଧାରା ନେଇ ଯଦି ମହାତ୍ମାଙ୍କୁ ମିଛ ମହାତ୍ମା କରିବା ପାଇଁ ପ୍ରଚେଷ୍ଟା କରିଛନ୍ତି । ତେବେ ଡକ୍ଟର ରଂଜନ ମହାଶୟ ନିଶ୍ଚୟ ବିଫଳ ହେବେ । କାରଣ ଗୋଦାବରୀଶ କହିଲା ଭଳି 'କେତେ ନିଆଁ ଖୁଣ୍ଟା ଖେଞ୍ଚିବିରେ ଓଡ଼ିଆ ପୁଅ' । ଯେତେ ଉପାୟ କଲେବି ଆମ ପାଠକ ସମାଜ ତାତିବେ ନାହିଁକି ମାତିବେ ନାହିଁ । ଆମେ ହଲପ କରି କହିବୁ ଯେଉଁମାନେ ମାତିଛନ୍ତି ଏପର୍ଯ୍ୟନ୍ତ ସେ ବହିକୁ ଅନେକ ଦେଖି ନଥିବେ ।

✷

# ପାଞ୍ଚାଳି ମନେପଡ଼ନ୍ତି

ମହାଭାରତର ପାଞ୍ଚାଳି କଥା ଅନେକ ସମୟରେ ମନେପଡ଼େ । ସେଦିନ ଅର୍ଜ୍ଜୁନ ଲାଖବିନ୍ଧି ସ୍ୱୟଂବରରେ ଜିତିଯାଇ ଦ୍ରୌପଦୀଙ୍କୁ ନେଇ ଆସିଲେ । ମାଆକୁ କହିଲେ – ମାଆ ଗୋଟେ ତୋଲାଗି ଭଲ ଜିନିଷ ଆଣିଛି । କୁନ୍ତୀ କହିଲେ – ଯାହା ଆଣିଛୁ ପାଞ୍ଚଭାଇ ବାଣ୍ଟି କୁଣ୍ଟି ଖାଅ ।

ବାଶ୍–ମାଆଙ୍କ କଥାମାନି ପାଞ୍ଚଭାଇ ଦ୍ରୌପଦୀକୁ ନିଜର ସ୍ତ୍ରୀ ବୋଲି ଗ୍ରହଣ କଲେ । ଏଇ ପ୍ରଥା ଅନୁସାରେ ଜୌନସାରୀ ସଂପ୍ରଦାୟରେ କନ୍ୟାର ଅଭାବ ଯୋଗୁଁ ଗୋଟିଏ ଝିଅକୁ ଘରର ସମସ୍ତ ଭାଇମାନେ ବିବାହ କରନ୍ତି ।

ତେବେ ସାଧାରଣ ଝିଅ ଆଉ ପାଞ୍ଚାଳିଙ୍କ କଥା ଭିତରେ ଆକାଶ ପାତାଳ ପ୍ରଭେଦ । ଦ୍ରୌପଦୀ ପ୍ରତି ସ୍ୱାମୀଙ୍କ ସହ ରାତ୍ରିଯାପନ ପରେ ଶୁଦ୍ଧ ଅଗ୍ନିସ୍ନାନ କରି ନୂତନ ରୂପେ ନୂତନ ଜନ୍ମନେଇ ଅନ୍ୟ ଭାଇର ପତ୍ନୀ ଭୂମିକା ନିର୍ବାହ କରନ୍ତି ।

ଏ ଯୁଗରେ ରାଜନେତାମାନଙ୍କ ଉଦ୍‌ଘାଟନ ପର୍ବ ଦେଖିଲେ ମୋର୍ ଦ୍ରୌପଦୀଙ୍କ କଥା ବେଶୀ ମନେପଡ଼େ ।

ଏବେ ଏବେ ଖବର ମିଳିଛି ବାଲେଶ୍ୱର ଜିଲ୍ଲାର ଗୋଟେ ରାସ୍ତା ଆଉ ପୋଲକୁ ଜଣେ ବରିଷ୍ଠ ମନ୍ତ୍ରୀ ଉଦ୍‌ଘାଟନ କଲେ । ଏହି ପୋଲ ଦିବର୍ଷ ତଳେ ଆଉ ଜଣେନେତାଙ୍କ ଦ୍ୱାରା ଉଦ୍‌ଘାଟିତ ହୋଇଥିଲା । ତେଣୁ ପ୍ରତି ନେତାଙ୍କ ଉଦ୍‌ଘାଟନ ବେଳକୁ ପୋଲଟି ନୂଆଭାବେ ନିଜକୁ ସଜାଏ । ଠିକ୍ ଦ୍ରୌପଦୀ ପ୍ରତିସ୍ୱାମୀଙ୍କ ପାଖକୁ ଯିବାପୂର୍ବରୁ ନୂଆରୂପେ ଉଭାହୁଅନ୍ତି ।

ଏଣୁ ଆମ ବିଚାରରେ ଏଇ ସେତୁଟି ଦ୍ରୌପଦୀଙ୍କ ସଂଗେ ତୁଳନୀୟ । ବେଳେବେଳେ ନେତାମାନେ ଆଉ ପାଦେ ଆଗେଇ ଯାଆନ୍ତି । ଧରନ୍ତୁ କଂଗ୍ରେସ ସରକାରର ଜଣେ ମନ୍ତ୍ରୀ ଗୋଟେ ପୋଲ ନିର୍ମାଣ ପାଇଁ ଶୁଭଦେଲେ । ପାଞ୍ଚବର୍ଷ ଶାସନ ଭିତରେ ସେ ପୋଲ ହୋଇ ପାରିଲା ନାହିଁ । ଜନତା ସରକାର ଆସିଲା, ଏଣୁ ନୂଆ ସରକାରର ନୂଆମନ୍ତ୍ରୀ ନୂଆକରି ପୁଣି ଶୁଭଦେଲେ ସେଇ ସେତୁ ଟି ପାଇଁ । ଏଣୁ ଏ ସବୁ ଘଟଣା ଦେଖି ମୋର ଖାଲି ପାଞ୍ଚାଳି ମନେ ପଡ଼ନ୍ତି ।

✷

# ଯା'ବାପ ଚଢେ ଘୋଡ଼ା
# ତା' ପୁଅ ଥୋଡ଼ା ଥୋଡ଼ା

ପିଲାଦିନେ ମୁଁ ଦୁଇଟି କଥା ଶୁଣିଅଛି । ସେ କଥା ଦୁଇଟି ଏବେବି ମନେ ଅଛି । ପ୍ରଥମଟି ହେଲା ମଧୁବାବୁ ସଂଗେ ଲଢିବି, କାଳିଆ ଘୋଡ଼ାରେ ଚଢିବି ।

୨ୟ କଥା ହେଲା ଯା ବାପ ଚଢ଼େ ଘୋଡ଼ା ତା ପୁଅ ଥୋଡ଼ା ଥୋଡ଼ା ।

ଅନେକ ଦିଗରୁ ସେ କଥା ଦୁଇଟିକୁ ମୁଁ ପରିସ୍ଥିତି ଆସିଲେ ମନେ ପକାଏ । ଅବଶ୍ୟ ମଧୁବାବୁ ସଂଗେ ଲଢ଼ିବାର କାଳିଆ ଘୋଡ଼ା ଚଢ଼ାର କି ସମ୍ବନ୍ଧ ମୋର ମନେ ନାହିଁ । ଭାବୁଛି ମଧୁବାବୁ ବୋଧେ କେବେ କେମିତି ବାରିଷ୍ଟର ଥିଲାବେଳେ ଘୋଡ଼ା ଚଢ଼ିଥିବେ ଆଉ ସେ ଘୋଡ଼ାର ରଙ୍ଗ କାଳିଆ ହୋଇଥିବ ।

ତେବେ ଯାହା ବାପ ଚଢ଼େ ଘୋଡ଼ା ତା ପୁଅ ଥୋଡ଼ା ଥୋଡ଼ା କଥାଟା ମୁଁ ବି ଅଙ୍ଗେ ଲିଭାଇଛି । ମୋ ବାପା କିଛି କିଛି ଗୀତ କବିତା ଲେଖୁଥିଲେ, ତେବେ ମୁଁ କିଛି ଲେଖା ଲେଖି କରୁଛି । ମୋ ପୁଅ ବି କିଛି କିଛି ଲେଖୁଛି । ତଫାତ୍ ଏତିକି ମୁଁ ଓଡ଼ିଆରେ ଲେଖୁଛି ଆଉ ପୁଅ ଇଂରାଜୀରେ ।

ତେବେ ଲେଖକ କବି ଚିତ୍ର ଶିଳ୍ପୀଙ୍କ କ୍ଷେତ୍ର ଅପେକ୍ଷା ରାଜନୀତି କ୍ଷେତ୍ରରେ ଏବେ ଏଇ ଉତ୍ତାରାଧିକାର ସୂତ୍ରରେ କିଛି ହାତେଇ ନେବାଟା ବେଶ୍ ଆଖିଦୃଶିଆ ।

ଏଇ ଆମ ଓଡ଼ିଶା କଥା ଦେଖୁନାହାନ୍ତି–ହିସାବ କଲେ ଦେଖିବେ, ଆମ ରାଜ୍ୟରେ ଛଅଜଣ ମୁଖ୍ୟମନ୍ତ୍ରୀଙ୍କ ସଂପର୍କୀୟ ଏବେ ନିର୍ବାଚନ ରଣାଙ୍ଗନରେ । ନିଜ ନିଜ ପିତା ମାତା ପରିଚୟ ନେଇ ସେମାନେ ନିର୍ବାଚନ ବୈତରଣୀ ପାର ହୋଇଯିବାକୁ ଆଶା ବାନ୍ଧିଛନ୍ତି ।

ଅବଶ୍ୟ ମୂର୍ଖ ସ୍ତ୍ରୀ ମଧ୍ୟ ସ୍ୱାମୀର ପ୍ରଭାବରେ ଗୋଟାଏ ରାଜ୍ୟକୁ ସମ୍ଭାଳି ନେବାର ଦୃଶ୍ୟ ଆମେ ଦେଖି ସାରିଛେ । ପୂର୍ବକାଳରେ ରାଜାର ପୁଅ ରାଜା ହେଉଥିଲେ । ଗୋଟାଏ ସଭ୍ୟ ଦେଶର ରାଣୀ ନାମରେ ମଧ୍ୟ ଦୀର୍ଘଦିନ ଶାସନ ଚାଲିଥିଲା । ଏବେ ଆମ ଇ.ଟି.ଭିରୁ ଭାଗ୍ୟ ବିଧାତା ସିରିଏଲ ଦେଖିଲେ ଉତ୍ତରାଧିକାର ସୂତ୍ରରେ ତିନିପୁରୁଷ କେବଳ ତିନିଜଣ ମହିଳା ଗୃହକର୍ତ୍ତା ।

ଏବେ ଆମର ମହିୟସୀ ମହିଳାଙ୍କ ମହାନ ପୁତ୍ର ରାଜନୀତି ମଇଦାନକୁ ଫୁଲ୍‌କ୍ଲୋ ଫୁଲେଇ ଓହ୍ଲାଇ ଆସିଛନ୍ତି । ଦେଖାଯାଉ ମହୀୟସୀ ମହିଳାଙ୍କ ମହନୀୟା କନ୍ୟା କେବେ ରାଜନୀତିର ମଇଦାନରେ ବୋବାଲ ଛାଡ଼ିବେ ।

ଏବେ ଦେଖନ୍ତୁ ନା ! ଜଣେ ବାପା ଉତ୍କଳର ନାମକୁ ଉଜ୍ଜ୍ୱଳ କରିବା ପାଇଁ କଳିଙ୍ଗ କପ୍ ଭାବେ ବିଶ୍ୱଦରବାରକୁ ନେଇଗଲେ । ଅଥଚ ତାଙ୍କ ଉତ୍ତରାଧିକାରୀ ଏଯାଏଁ ଓଡ଼ିଆ ଭାଷାକୁ ବି ମର୍ଯ୍ୟାଦା ଦେଲେନି । ଏଠି ସେ କଥା ମାନେ ଯା' ବାପ ଚଢେ ଘୋଡ଼ା....... କାହିଁକି ଠିକ୍ ହେଉନି ?

✷

# ହାଇହିଲ୍ ଯୋତା

ଆଜିକାଲି ହାଇହିଲ୍ ଯୋତା ପିନ୍ଧିବା ଗୋଟେ ଫେସନ୍ । ହାଇହିଲ୍ ପିନ୍ଧି, କାନ୍ଧରେ ଭ୍ୟାନିଟ୍ ବ୍ୟାଗ ପକାଇ, ମୁଣ୍ଡବାଳକୁ ସାମ୍ପୋକରି ଫୁର୍‌ଫୁର୍ ଉଡାଇ ଖପ୍ ଖପ୍ ଚାଲିଲେ ଗୋଟିଏ ନିଆରା ଗ୍ଲାମର୍ ସୃଷ୍ଟିହୁଏ ବୋଲି ଯୁବତୀମାନଙ୍କ ଧାରଣା । ମାତ୍ର ଏଇ ହାଇହିଲ୍ ଯୋତା ପିନ୍ଧିଲେ ଯେ ଶରୀରର କେତେ କ୍ଷତି ହୁଏ ତାହା ସେମାନେ ଆଦୌ ଭାବନ୍ତି ନାହିଁ । ବେଳେ ବେଳେ ଏଇ ହାଇହିଲ୍ ଗୁଡ଼ିକ କାଠରେ ତିଆରି ହୋଇଥାଏ । ଏଣୁ ଚର୍ବିଯୁକ୍ତ ଗୋଇଠି ଉପରେ ଅହେତୁକ ଚାପ ପଡ଼େ । ଫଳରେ ଚର୍ବିର ସ୍ତର ଆଉ ତନ୍ତୁ ଗୁଡ଼ିକ ମଧ୍ୟ କ୍ଷୟ ହୁଏ । ରକ୍ତ ସଂଚାଳନରେ ବାଧାପ୍ରାପ୍ତ ହୁଏ । ବେଳେ ବେଳେ ଆବଡ଼ା ଖାବଡ଼ା ରାସ୍ତାରେ ଏଇ ହାଇହିଲ୍ ପିନ୍ଧିଗଲେ ଗୋଡ଼ ମକଚି ଯାଇପାରେ । ହାଇହିଲ୍ ପିନ୍ଧି ଚଲାବୁଲା କଲେ କେବଳ ଗୋଇଠି କାହିଁକି ଆଣ୍ଠୁ ଚାରିପାଖ ମାଂସପେଶୀ ଉପରେ ମଧ୍ୟ ଚାପ ପଡ଼େ ଫଳରେ ଆଣ୍ଠୁ ମଧ୍ୟ ଫୁଲିଯାଏ । ଦରଜ ହୁଏ । ବିଶେଷତଃ ମଧୁମେହ ରୋଗୀଙ୍କୁ ହାଇହିଲ୍ ଯୋତା ବେଶୀ ବିପଦରେ ପକାଇଥାଏ । ଡାଇବେଟିସ୍ ରୋଗୀର ପାଦର ରକ୍ତନଳୀ ସଂକୀର୍ଣ୍ଣ ହୋଇଥାଏ । ଏଣୁ ରକ୍ତ ଚଳାଚଳ ବାଧାହୁଏ । ଏହି ସମୟରେ ହାଇହିଲ୍ ପିନ୍ଧିଲେ ଗୋଇଠି ଉପରେ ଆହୁରି ବାଧାପଡ଼ି ଅକାଳୁଆ ଧରେ । ତେବେ ଯେଉଁ ସ୍ତ୍ରୀ ଲୋକ ଟିକେ ଅଳ୍ପ ଉଚ୍ଚତା ବିଶିଷ୍ଟ ସେମାନେ ଅଳ୍ପ ଉଚ୍ଚାର ହାଇହିଲ୍ ପିନ୍ଧିଲେ ଭଲ ଦେଖାଯାଆନ୍ତି । ଏବଂ ଦୀର୍ଘାଙ୍ଗୀ ଏବଂ ଶୀର୍ଣ୍ଣକାୟା ବିଶିଷ୍ଟ ରମଣୀମାନେ ହାଇହିଲ୍ ପିନ୍ଧିଲେ ଆଦୌ ସୁନ୍ଦର ଦେଖାଯାଆନ୍ତି ନାହିଁ ।ଏଣୁ ଯୁବତୀମାନେ ନିଜର ଶରୀର ଗଠନକୁ ଚାହିଁ ନିଜ ଯୋତାର ହିଲ୍ ନିର୍ବାଚନ କରିବା ଦରକାର । ନହେଲେ ହାଇହିଲ୍ ପିନ୍ଧି ଖପ୍‌ଖପ୍ ଘୋଡ଼ାଟାପୁ ଚାଲି ଚାଲିଲେ ଲାଭ କଣ ।

✷

# ନିମ୍ନଗାମୀ ଦାଦା

**ଜ୍ୟେ**ଷ୍ଠମାସର ଟାଣ ଖରାବେଳ । ମୁଁ ଜରୁରୀ କାମରେ ଗ୍ରାମ୍ୟ ବ୍ୟାଙ୍କ ଆଡ଼େ ଯାଉ ଯାଉ ଭୁବନବାବୁଙ୍କ ଫର୍ଣ୍ଣିଚର ଦୋକାନ ପାଖରେ ଅଟକିଗଲି । ପତ୍ରିକା ବୋଲେ ହୁଁଟି ଆଉ ଚଲାପଥର ଉତ୍ସବ ସମ୍ବନ୍ଧରେ କଥା ହେଉଥାଉ ମୁଁ ଆଉ ଭୁବନବାବୁ । ଏତିକିବେଳେ ସ୍ତ୍ରୀ ଲୋକଟିଏ ଆସି ସେଠାରେ ପହଞ୍ଚିଲା । କାଖରେ ଗୋଟିଏ ଦୁଧଖିଆ ଛୁଆ ଆଉ ଗୋଟିଏ ଛୁଆ ୩/୪ ବର୍ଷର । ସ୍ତ୍ରୀ ଲୋକଟି ତାର ଦୁଃଖ ଜଣାଇ କହିଲା ମୋ ଘର ନାଆମି (କଣ୍ଡାପଡ଼ା) ରେ । ମୋ ଗିରସ୍ତ ରାଜମିସ୍ତ୍ରୀ କାମ କରୁଥିଲେ । ଏବେ ତାଙ୍କର ମୂତ୍ରଯନ୍ତ୍ର (କିଡ୍‌ନୀ) ଖରାପ ହୋଇଛି । ଚିକିତ୍ସା କରିବା ପାଇଁ ପଇସାପତ୍ର ବହୁତ ଆବଶ୍ୟକ । ଆମେ ଏତେ ପଇସା କେଉଁଠୁ ପାଇବୁ ? ଶେଷରେ ଠିକ୍ କରିଛୁ ମାନ୍ଦ୍ରାଜ ସାଇବାବାଙ୍କ ପାଖକୁ ଯିବୁ । ତାଙ୍କରି ଆଶ୍ରା ନେବୁ । ଯାହା ଭାଗ୍ୟରେ ଥିବ । ଏଣୁ ଟିକଟ ଖର୍ଚ୍ଚପାଇଁ କିଛି ଭିକ୍ଷା ମାଗୁଛି ।

ସ୍ତ୍ରୀ ଲୋକଟିକୁ ମଧ୍ୟ ଭିକ୍ଷା ମାଗିବାକୁ ଲାଜ ମାଡୁଥାଏ । ମୁଁ ତାକୁ ଦଶଟି ଟଙ୍କା ଦେଲି । ତାପରେ ସେ ପାଖ ବ୍ଲକ ଅଫିସ୍ ଆଡ଼କୁ ଗଲା । ମୁଁ ମଧ୍ୟ ଗ୍ରାମ୍ୟ ବ୍ୟାଙ୍କରେ ମୋର କିଛି ଟଙ୍କା ଦେଣ ନେଣ କାର୍ଯ୍ୟ ସାରି ଫେରିଲା ବେଳକୁ ସେହି ସ୍ତ୍ରୀ ଲୋକଟି ଆସି ବ୍ୟାଙ୍କରେ ପହଞ୍ଚିଲା । ସେ ପ୍ରାୟ କାନ୍ଦ କାନ୍ଦ ଅବସ୍ଥାରେ ଥାଏ । ଦେହ ମୁଣ୍ଡରୁ ଝାଳ ଟପ୍ ଟପ୍ ଗଡୁଥାଏ । ଦୁଧଖିଆ ଛୁଆଟା ଛାତିରୁ ଲୁଗା ଟଣା ଓଟରା କରୁଥାଏ ।

ସ୍ତ୍ରୀ ଲୋକଟି କାନ୍ଦି କାନ୍ଦି କହିଲା – ଆଜ୍ଞା ବ୍ଲକକୁ ଯାଇଥିଲି । ଗୋଟାଏ ମୋଟା ସୋଟା ନିଶୁଆ ଲୋକ ମୋ ଦୁଃଖ ଶୁଣି ଆହା – ଚୁ – ଚୁ କଲା । ତା' ପରେ ମୋତେ ବୁଝାଇ ଶୁଝାଇ ସବୁ ବାବୁମାନଙ୍କ ପାଖକୁ ନେଲା । ମୋ ଦୁଃଖ ସଭିଙ୍କ ଆଗରେ କହି ମୋ ପାଇଁ କିଛି ପଇସାବି ଆଦାୟ କଲା । ମୁଁ ପଚାରିଲି କେତେ ପଇସା ଆଦାୟ କଲା ? ସ୍ତ୍ରୀ ଲୋକଟି କାନ୍ଦି କାନ୍ଦି କହିଲା ବାବୁ କେତେ ଟଙ୍କା ଆଦାୟ କରିଥିଲା ମୁଁ ଜାଣିନାହିଁ । ତେବେ ବି.ଡି.ଓ ବାବୁ କୋଡ଼ିଏ ଟଙ୍କିଆ ନୋଟ୍‌ଟାଏ ଦେବା ମୁଁ ପରଦା ଆଢୁଆଳରୁ ଦେଖିଛି । ହେଲେ ବାବୁ ଆଦାୟକରି ମୋତ ସାଙ୍ଗରେ ବ୍ଲକ ଅଫିସ୍ ଗେଟ ପାଖକୁ ଆଣିଲା । ମୁଁ ପଇସା ମାଗିବାରୁ ମୋତେ ନାଲିଆଖି ଦେଖେଇ ଧମକ ଚମକ ଦେଇ ପଇସା ତକ ନେଇ ଚାଲିଗଲା । ତାପରେ ନିଜକୁ ସାନ୍ତ୍ୱନା ଦେବା ଭଙ୍ଗିରେ କହିଲା ଯାଉ ବାବୁ ସେ ବଡ଼ଲୋକ ହେଉ । ଭଗବାନ ମୋର ସାହା ଅଛନ୍ତି ।

ମୁଁ ଜାଣିଥିଲି ଦାଦାମାନେ କଣ୍ଟ୍ରାକ୍ଟର ମାନଙ୍କଠାରୁ କିମ୍ବା ଋଣ ଗ୍ରହିତା ମାନଙ୍କ ନିକଟରୁ ଧମକେଇ ଚମକେଇ ବଟି ଆଦାୟ କରନ୍ତି । ହେଲେ ଏଭଳି ଅଭିନବ ଉପାୟରେ ଭିକାରୀକୁ ମଧ୍ୟ ଆଧାରକରି ପଇସା ଆଦାୟର ଫନ୍ଦି ଦାଦାମାନେ କେବେଠାରୁ ଉଦ୍‌ଭାବନ କଲେ ଆମକୁ ଜଣାନାହିଁ । ଏମାନେ ପଇସା ପାଇଁ ଆଉ କେତେ ତଳକୁ ଖସିଯାଉଛନ୍ତି ତାହା ଦେଖିବାକୁ ବାକିରହିଲା ।

# ପ୍ରତିଶ୍ରୁତି

**ଶ**କୁନ୍ତଳାଙ୍କ ରୂପରେ ମୁଗ୍ଧ ହୋଇ ଦୁଷ୍ମନ୍ତ ପ୍ରତିଶ୍ରୁତି ଦେଇଥିଲେ ରାଣୀକରି ନେଇଯିବାକୁ । ସ୍ମୃତିସ୍ୱରୂପ ମୁଦିଟିଏ ମଧ୍ୟ ଅନାମିକା ଅଙ୍ଗୁଳିରେ ପିନ୍ଧେଇ ଦେବାକୁ ଭୁଲି ନଥିଲେ । କେତେ ହଇରାଣ ହେବାକୁ ପଡ଼ିଥିଲା ଶକୁନ୍ତଳାଙ୍କୁ ଏହା ସମସ୍ତଙ୍କୁ ମାଲୁମ । ସେହିପରି ବିଦ୍ୟାପତି ଲଳିତାଙ୍କୁ ପ୍ରତିଶ୍ରୁତି ଦେଇ ନୀଳମାଧବ ପାଇ କି କାଣ୍ଡ କାରଖାନା କଲେ ସମସ୍ତଙ୍କୁ ଜଣା । ଏଇ ପ୍ରତିଶ୍ରୁତି ପାଇଁ ଯୁଗ ଯୁଗ ଧରି କେଳେଙ୍କାରୀ ଲାଗି ରହିଛି । ଆଜି ବି ବେଶ ହଟଚମଟ ଏଇ ପ୍ରତିଶ୍ରୁତି ପାଇଁ । କନ୍ୟାପିତା ଯୌତୁକ ଦେବାକୁ ପ୍ରତିଶ୍ରୁତି ଦେଉଛି । ଦେବା ନେବାରେ ଏପଟ ସେପଟ ହେଲେ କଥା ସଇଲା । ବିଚରା ବୋହୁଟି ନାନା ଶାରରୀକ ଆଉ ମାନସିକ ନିର୍ଯ୍ୟାତନାରେ ଶୀକାର ହେଉଛି । ନେତାଏ ନିର୍ବାଚନରେ ଜନସାଧାରଣଙ୍କର ଅନେକ କିଛି ମଙ୍ଗଳକର ଯୋଜନା କାର୍ଯ୍ୟକାରୀ କରିବାକୁ ପ୍ରତିଶ୍ରୁତି ଦେଉଛନ୍ତି । ହେଲେ ପାଞ୍ଚବର୍ଷ ଶାସନ କାଳରେ ପ୍ରତିଶ୍ରୁତିର ପାଞ୍ଚ ପରସେଣ୍ଟ ପାଳିତ ହେଉଛି କି ନା ସନ୍ଦେହ । ତେବେ ସବୁଠୁ ଉଲ୍ଲେଖ ଯୋଗ୍ୟ ଭୂମିକା ରହିଛି ପ୍ରତିଶ୍ରୁତିର ପ୍ରେମ ଜଗତରେ । ପ୍ରତିଦିନ ପ୍ରେମିକଟି ପ୍ରତିଶ୍ରୁତି ଦିଏ ପ୍ରେମିକାକୁ ବଧୁରୂପେ ଘରକୁ ନେଇଯିବା ପାଇଁ । କେଉଁଠି କେମିତି ପ୍ରେମିକା ଅଡିବସିଲେ ପ୍ରେମିକଟି ମନ୍ଦିରକୁ ନେଇ ମୁଣ୍ଡରେ ସିନ୍ଦୁର ଆଉ ହାତରେ ଶଂଖା ପିନ୍ଧେଇ ଦିଏ । ଆଉ ଖୁବ୍‌ଶୀଘ୍ର ଘରକୁ ପାଟରାଣୀ କରି ନେଇଯିବାର ପ୍ରତିଶ୍ରୁତି ଦେଇଥାଏ । ସବୁଠୁ ମାରାତ୍ମକ ପ୍ରତିଶ୍ରୁତି ଦିଆଯାଏ ଯୁବତୀମାନଙ୍କୁ ଧର୍ଷଣ ପୂର୍ବରୁ । ବିବାହର ପ୍ରଲୋଭନ ଦେଖାଇ ନବ ଯୌବନାଟିକୁ ଧର୍ଷଣ କରିବାର କାରନାମା ବେଶ ଜଣା ଏଇ ତଥାକଥିତ ନିଶାଖୋର, ବେକାରୀ ଯୁବକମାନଙ୍କୁ । କିନ୍ତୁ ଦୁଃଖ ଲାଗେ ପ୍ରତିଦିନ ଖବରକାଗଜ ପୃଷ୍ଠାରେ ଏଇଭଳି ସମ୍ବାଦ ପ୍ରକାଶ ପାଉଥିଲେ ବି ଆମ କୁମାରୀ ଆଉ କିଶୋରୀମାନେ ଆଦୌ ଚିନ୍ତା

ନକରି କେଇପଦ ଛଳନାର ମିଠା କଥା ଆଉ କେଇଟା ଟଙ୍କାର ଗିଫ୍ଟ୍ ବଦଳରେ ନିଜକୁ ସମର୍ପଣ କରି ଦେଉଛନ୍ତି ସେଇ ତଥାକଥିତ ଖଳନାୟକମାନଙ୍କ ପାଖରେ । ଏଣୁ ହେ ମୋର ସରଳା କିଶୋରୀ କନ୍ୟାମାନେ ମିଛ ପ୍ରତିଶ୍ରୁତି ପ୍ରତି ସଜାଗ ରୁହ ।

●

# ଓଡିଆଙ୍କ ଆଖିରେ ଆଲୁଅ

ପ୍ରକୃତରେ ଓଡ଼ିଆଙ୍କ ଆଖିରେ ଏବେ ଆଲୁଅ ଜଳୁଛି । ତୋଫା ଆଲୁଅ । ବାଞ୍ଚା ଗଲ ଗଲ ବାବାରେ ଆଲୁଅ ଠାରୁ ଆହୁରି ତୋଫା, ଆହୁରି ଆହୁରି ତୋଫା । ଏକଥା ମୁଁ କହୁନାହିଁ ଆଜ୍ଞା – ଖୋଦ୍ ଆମ କେନ୍ଦ୍ର ସରକାରଙ୍କର ଓଡ଼ିଆଙ୍କ ପ୍ରତି ଏହି ଧାରଣା । ଓଡ଼ିଆଙ୍କୁ ଭୋକ ଲାଗିଲେ ସେ ପେଟରେ ଓଦାକନା ଦେଇ ଶୋଇବାରେ ଅଭ୍ୟସ୍ତ ।

ଓଡ଼ିଆ ଚାଷୀ ଏବେ ଧାନ ବିକ୍ରି କରିନପାରି ତା ଅମାରରେ ସାଇତି ରଖୁଛି । ଧାନ ଅମାରରେ ରହିଲେ ମୂଷାତ ଖାଇବେ ହିଁ ଖାଇବେ । କିନ୍ତୁ ଆମ ଓଡ଼ିଆ ଚାଷୀ ଆଖିରେ ବି ଆଲୁଅ । ଏଣୁ ସେ ଅମାରର ଅନ୍ଧାରୁଆ କୋଣରୁ ବି ମୂଷାକୁ ଦେଖି ମାରି ଦେଇପାରେ ।

ତେବେ ଏଇ ଆଖିରେ ଆଲୁଅଟାକୁ ଆପଣ ବେମାରି ଅର୍ଥରେ ନେଲେବି ଚଳିବ । ଅର୍ଥାତ୍ ଓଡ଼ିଆଙ୍କ ଆଖିରେ ଏବେ ଆଲୁଅ ବାହାରି ଥିବାରୁ ତାଙ୍କୁ କିଛି ଦେଖାଯାଉନି । ଏଣୁ ଆଲୁଅକୁ ଡରି ସେ ରାତିରେ ଡିବିରି କି ଲଣ୍ଠନ ଜାଳୁନାହିଁ । ସେହି କାରଣରୁ ତାର ରାତିରେ ଏବେ କିରାସିନୀ ଆଉ ଦରକାର ପଡୁନାହିଁ । ଏହି କଥାଟା ଏବେ ଦିଲ୍ଲୀ ଦରବାରରେ ବୋଧେ କେହି କର୍କଟ ଧର୍ମୀ ଭଦ୍ର ଜଣେଇ ଦେଇ ଅଛନ୍ତି । ସେଥିପାଇଁ କେନ୍ଦ୍ର ସରକାର ଓଡ଼ିଶାକୁ ତାର କିରାସିନୀ କୋଟାରୁ ୪୧୫ (ଚାରିଶହ ପନ୍ଦର) କିଲୋ ଲିଟର କମେଇ ଦେଇଛନ୍ତି । କମେଇ ଦିଅନ୍ତୁ, ଆମର କିଛି ଭାବିବାର ନାହିଁ । କାରଣ ଆମର ପରିସଂଖ୍ୟାନ ବିଭାଗ ହିସାବ କରି ଦେଖିଛନ୍ତି ପ୍ରତି ମାସରେ ସର୍ବନିମ୍ନ ୬୦ ହଜାର କିଲୋଲିଟର କିରୋସିନୀ ଦରକାର କିନ୍ତୁ ଆମେ ପ୍ରାୟ ପାଉଛେ ୩୩ ହଜାର ଠୁଁ ଟିକେ ଅଧିକା କିଲୋଲିଟର ତେଲ ତେଣୁ ହାରାହାରି ୨୭ ହଜାର କମ୍ ଲିଟର ତେଲରେ ବି ଆମେ ଚଳି ଯାଉଛେ । ଏଣୁ ଆମ କୋଟାରୁ ଆଉ ୫୦୦ କିଲୋ ଲିଟର କମେଇ ଦେଲେ ବି କିଛି କ୍ଷତି ନାହିଁ । ତା ଛଡା ଯେଉଁ ତେଲ ବି

ଆସୁଛି – ତାହା କଣ ଠିକ୍ ଭାବରେ ବି.ପି.ଏଲ କାର୍ଡ ଧାରୀଙ୍କ ପାଖରେ ପହଞ୍ଚୁଛି । ବରଂ ତାହା ବାଟମାରଣା ହୋଇ ଯୋଗାଣ ବିଭାଗର କରିତ୍କର୍ମା କର୍ମଚାରୀଙ୍କ ଦୟାରୁ କଳା ବେପାରୀଙ୍କ ପେଟ ପକାଇବାରେ ସାହାଯ୍ୟ କରୁଛନ୍ତି । ଏହି ସବୁ କାରଣରୁ ବୋଧେ ପଞ୍ଜାବ, ହରିୟାଣା, ମହାରାଷ୍ଟ୍ର ଭଳି ଧନୀ ରାଜ୍ୟ ଗୁଡ଼ିକ ମୁଣ୍ଡ ପିଛା ୧୫ ଲିଟର କିମ୍ବା ତାଠାରୁ ବେଶୀ ପାଉଛନ୍ତି । ଏପରିକି ନୂଆ ହୋଇ ଗଠିତ ହେଉଥିବା ରାଜ୍ୟ ଝାଡ଼ଖଣ୍ଡ ବି ମୁଣ୍ଡପିଛା ୮ ଲିଟର ପାଉଛି । ହେଲେ ଓଡ଼ିଆଙ୍କୁ ମୋଟେ କିରାସିନୀ ନ ଦେଲେ ବି ଆମ ରାଜ୍ୟର ଓଡ଼ିଆ, ଆମ ଓଡ଼ିଆ ନେତା (ଭୁବନେଶ୍ୱରୀ ଆଉ ଦିଲ୍ଲୀଶ୍ୱରୀ) କେହି ଉଁ –ଚୁଁ ହବାର ନାହିଁ । କାରଣ ଆମର ଆଲୁଅ ଦରକାର ନାହିଁ । ଆମ ଆଖିରେ ଆଲୁଅ ଜଳୁଛି ।

●

# ଦେହ ବ୍ୟବସାୟ କେନ୍ଦ୍ର

ଆମେ ସବୁ ପିଲାଦିନେ ଭୂଗୋଳ ବହିରୁ ଘୋଷି ଘୋଷି କେତୋଟି କେନ୍ଦ୍ରକଥା ମନରେ ରଖିଥିଲୁ । ଏଇ ଯେମିତି କଲିକତା ଏକ ଶିଳ୍ପବାଣିଜ୍ୟ କେନ୍ଦ୍ର । ବମ୍ବେ ଚଳଚିତ୍ର ନିର୍ମାଣ କେନ୍ଦ୍ର । ବାଙ୍ଗାଲୋର ବୈଜ୍ଞାନିକ ଯନ୍ତ୍ରପାତି ଉତ୍ପାଦନ କେନ୍ଦ୍ର ଇତ୍ୟାଦି ।

ବେଳେ ବେଳେ ଏଇ କେନ୍ଦ୍ର ଶବ୍ଦ ପ୍ରାଣରେ ଯୁକ୍ତ ହୋଇ ହୁଏ ପ୍ରାଣକେନ୍ଦ୍ର । ମାତ୍ର ଏବେ ଏବେ ଏହା ଦେହ ସହ ଯୋଗ ହୋଇ ଦେହ ବ୍ୟବସାୟ କେନ୍ଦ୍ର ହେଲେ ଚିନ୍ତା ନଥାଆନ୍ତା ଅଥଚ ଏହା ଦେହ ବ୍ୟବସାୟ କେନ୍ଦ୍ର ଭାବରେ ପରିଚାଳିତ ହୋଇ ଆମର ମୁଣ୍ଡ ତଳକୁ କରିଦେଇଛି ।

ସରକାର ବିଭିନ୍ନ ଯୋଜନା ମାନ କରି ଗରିବୀ ହଟାଓ ପାଇଁ ସ୍ୱଳ୍ପ ସୁଧରେ ବିଭିନ୍ନ ଋଣଦାନର ବ୍ୟବସ୍ଥା କରୁଛନ୍ତି । ବ୍ୟାଙ୍କ ମ୍ୟାନେଜର ମାନେ ଶିଳ୍ପ ତାଲିମ କେନ୍ଦ୍ରର ପ୍ରତିଷ୍ଠାତା ମାନଙ୍କୁ ମଧ୍ୟ ଏହି ଋଣଦାନର ହର୍ତ୍ତାକର୍ତ୍ତା ବିଧାତା । ଏଇମାନେ ବେକାର ଯୁବକ ଯୁବତୀଙ୍କର ରକ୍ଷକ କହିଲେ ଠିକ୍ ହେବ । କିନ୍ତୁ ଏଇ ରକ୍ଷକମାନେ ଏବେ ଭକ୍ଷକ ସାଜି ଯୁବତୀମାନଙ୍କୁ ଋଣ ଦେବା ଆଳରେ ଅନୈତିକ କାର୍ଯ୍ୟ କରିବାକୁ ବାଧ୍ୟ କରୁଛନ୍ତି । ସବୁଠୁ ଦୁଃଖର କଥା ଜଣେ ପଦସ୍ଥ ଅଫିସର ଏବଂ ତାଙ୍କ ପତ୍ନୀ ରହିଥିବା ଘରକୁ ଦେହ ବ୍ୟବସାୟ କେନ୍ଦ୍ରରେ ପରିଣତ କରିଛନ୍ତି । ଏଣୁ ଆଜି ଡଲିରାଣୀ, ମୀନା, ସନ୍ତୋଷୀମାଙ୍କ ନାମ ଯୋଡ଼ା ହୋଇ ଯୌନଲୀଳାର କୀର୍ତ୍ତନ ଚାଲିଛି ।

ଲୋକେ ମଦ ବ୍ୟବସାୟ କରି ସବୁଠୁ ବେଶୀ ଲାଭବାନ ହେଉଥିଲେ । ସରକାର ମଧ୍ୟ ମଦର ବନ୍ୟା ଛୁଟାଇବା ପାଇଁ ବିଭିନ୍ନ ଭାବରେ ସାହାଯ୍ୟ କଲେ । କେତେଗୁଡ଼ିଏ ଜିଲ୍ଲାରେ ମହୁଲି ମଦ ପ୍ରଚଳନର ବ୍ୟବସ୍ଥା କଲେ । ଏଣୁ ଜାଣି ଜାଣି ମଦ୍ୟ ଉତ୍ପାଦନ କେନ୍ଦ୍ର ସ୍ଥାପନ କରି ମଦ୍ୟ ନିର୍ମାତା ଧନୀ ହୋଇଗଲେ ।

ମାତ୍ର ଏବେ ଯାହା ଦେଖାଯାଉଛି ମଦ ବ୍ୟବସାୟ ପାଖରେ ଦେହ ବ୍ୟବସାୟଟିଏ ଭଲ ଭାବରେ ଚାଲିପାରିବ। ଲୋକେ ମଦ ଖାଇବେ । ନିଶାରେ ଭୋଳ ହେବେ, ଦେହର ଭୋକ ମେଣ୍ଟାଇବାକୁ ପାଖରେ ଥିବା ଦେହ ବ୍ୟବସାୟ କେନ୍ଦ୍ରକୁ ଗମନ କରିବେ ।

ଜାତୀୟ ରାଜପଥ କଡ଼େ କଡ଼େ ପେଟ୍ରୋଲ ପମ୍ପ, ଢାବା ଆଉ ପାନ୍ଥଶାଳା ଏବେ ଦେହଜୀବୀଙ୍କ ଚଟିଘର ମାନ ଛତୁ ଫୁଟିଲା ପରି ଉଭା ହେଲାଣି । ଅଥଚ ଏସବୁ ପୋଲିସଙ୍କ ଦୃଷ୍ଟିକୁ ଆସୁନାହିଁ । ପୋଖରୀରେ ପାଣିଥିଲେ ଆଡିକୁ ଶୀତଳ ପରି ରାସ୍ତାକଡରେ ଏଇ ଦେହ ଜୀବୀଙ୍କ ମାଂସର ବାସ୍ନା ରାସ୍ତାକଡ଼ ଜଗୁଆଳିଙ୍କ ନାକରେ ତ ବାଜିବ.... ନା' କଣ କହୁଛନ୍ତି !

# ସାହିତ୍ୟ ସଭାର ପ୍ରକାର ଭେଦ

ଆଜିକାଲି ଦି' ପ୍ରକାର ସାହିତ୍ୟ ସଭା ଦେଖାଯାଏ । ଗୋଟେ ହେଉଛି ଭାତ ଡାଲମାର ସାହିତ୍ୟ ସଭା । ଅନ୍ୟଟି ହେଉଛି ଜଳଖିଆ ପ୍ୟାକେଟ୍ ସାହିତ୍ୟ ସଭା । ଏ ଦୁଇ ସଭାକୁ ଆମେ ସଂକ୍ଷେପରେ ଡାଲମା ସଭା ଆଉ ପ୍ୟାକେଟ୍ ସଭା ବି କହିପାରୁଁ । ଡାଲମା ସଭାଟି ପ୍ରାୟତଃ ସକାଳ ୧୦ଟା ବେଳକୁ ଆରମ୍ଭ ହୋଇ ୪/୫ଟା ବେଳକୁ ସରିଯାଏ । ଭାତ ଡାଲମା ପ୍ରାୟ ଅପରାହ୍ନ ଦୁଇଟା କିମ୍ବା ତିନିଟା ବେଳକୁ ଖିଆଯାଏ । ବେଳେ ବେଳେ ଗୋଟେ ପଟେ କବିତା ପାଠ ଚାଲିଥାଏ । ଅନ୍ୟପଟେ କବିତା ପଢ଼ି ସାରିଥିବା ଭାଗ୍ୟବାନ କବିମାନେ ଗରମ ଗରମ ଭାତ ଡାଲମା ଖାଇ ନେଉଥାନ୍ତି । ବେଳେ ବେଳେ ଏତେ ଗରମ ଥାଏ ଯେ ହାତ ଫୋଟକା ହେବାର ସମ୍ଭାବନା ଥାଏ ।

ଦ୍ୱିତୀୟ ପ୍ରକାର ସଭା ଅର୍ଥାତ୍ ପ୍ୟାକେଟ ସଭାଟି ପ୍ରାୟତଃ ଅପରାହ୍ନ ପାଞ୍ଚଟା ବେଳକୁ ଆରମ୍ଭ ହୁଏ । ଅତିଥିମାନେ ପହଞ୍ଚିବା ବେଳକୁ ପ୍ରାୟ ୬ଟା କିମ୍ବା ୬.୩୦ ହୋଇଯାଏ । ସଭା ଚାଲୁହୁଏ । ଭାଷଣ ବାଜି ଚାଲେ । ସମ୍ବର୍ଦ୍ଧନା ଦିଆଯାଏ । କିଛି ଲୋକଙ୍କୁ ଉତ୍ତରୀୟ ଏବଂ ପୁଷ୍ପଗୁଚ୍ଛ ବା ପୁଷ୍ପମାଳ ସାଙ୍ଗକୁ ଖଣ୍ଡେ ଭଲ କାଗଜରେ

ମାନପତ୍ର ଦିଆଯାଏ ।

ଆମେ କିନ୍ତୁ ଏବେ ଗୋଟେ ତୃତୀୟ ପ୍ରକାର ସଭା କଥା କହୁଛୁ । ଏ ସଭାକୁ ଆମେ ପାଣି ଚାହା ସଭା କହିବା, କାରଣ ଏ ସଭାଟି ଏକ ଭଲ ହୋଟେଲର ସମ୍ମିଳନୀ ଗୃହରେ ହେଉଥାଏ । ପ୍ରତି ପାଞ୍ଚ ମିନିଟ୍‌ରେ ହୋଟେଲର ବୟ ଆଣି ପାଣି ଯୋଗାଉଥାଏ । ଏଇ ପାଣି ନାତିଶୀତୋଷ୍ଣ ପାଣି । ମଝିରେ ଥରେ ଅବଶ୍ୟ ୫/୧୦ ମିଲି ଲିଟର କାପାସିଟିରେ ଚାହା ଟୋପେ ଟୋପେ ମିଳୁଥିଲା । ତେବେ ଆମେ ପ୍ୟାକେଟକୁ ଅପେକ୍ଷା କରି କରି ରାତି ୯ଟା ଟପିଲା, ପ୍ୟାକେଟ୍ କାହିଁ ?

ଇୟେ ତ ଡାଲମା ସଭାର ସମୟ ନୁହଁ । ପ୍ୟାକେଟ ସଭାର ସମୟ । ହେଲେ ପ୍ୟାକେଟ ନଥିଲା । ଅନୁସନ୍ଧାନ କରି ଜାଣିଲୁ, ସାହିତ୍ୟ ସଭାର ଆୟୋଜକ ଯେତେ ପ୍ୟାକେଟ ବରାଦ ଦେଇଛନ୍ତି ତା ଠୁଁ ବେଶୀ ଲୋକଙ୍କୁ ନିମନ୍ତ୍ରଣ କରିଛନ୍ତି । ଏଣୁ କିଛି ଲୋକ ବିଦା ହେଲେ ସିନା ପ୍ୟାକେଟ ଆସିବ । ତେବେ ଦର୍ଶକ ଯାଉ ଯାଉ ଦୂରରୁ ଆସିଥିବା ସମ୍ବର୍ଦ୍ଧିତ ପ୍ରତିଭାବି ଖାଲିପେଟରେ ଖସିଲେ ।

ଆମେ ଖାଲି ପେଟରେ ଆସୁ ଆସୁ ଭାବୁଥିଲୁ ଏହା ତୃତୀୟ ପ୍ରକାର ସଭା । ଏହାର ନାଆଁ ପାଣି ଚାହା ସଭା ଅଥବା ପାଣିଚିଆ ସଭା ଦିଆ ଯାଇପାରେ ।

# ମନ୍ତ୍ରୀଙ୍କ ନାଆଁ ଥିଲେ.......

ମନ୍ତ୍ରୀଙ୍କ ନାଆଁ ଥିଲେ ସବୁକାମ ସଫଳ ହେବା ଆମେ ଆଶା କରିବା । ମନ୍ତ୍ରୀଙ୍କ ସୁପାରିଶରେ ଚାକିରୀ ମିଳେ । ମନ୍ତ୍ରୀଙ୍କ ଟେଲିଫୋନ୍ ଉଠିଲେ ବଦଳି ଘଡ଼ିକରେ ହୁଏ । ପୁଣି ଆଉ ଘଡ଼ିକରେ ବନ୍ଦହୁଏ । ମନ୍ତ୍ରୀ ସର୍ବଦା କରିତ୍‌କର୍ମା । ତେବେ ଏଇ ମନ୍ତ୍ରୀଙ୍କ ଭିତରୁ ପ୍ରାୟତଃ ସମସ୍ତେ ଚତୁର । ତେବେ ବେଳେବେଳେ ଅବୁଝା ରାଜାକୁ ପାଳବିଣ୍ଡାମନ୍ତ୍ରୀ ଥିବା କଥା ଲୋକବାଣୀ ଜଣାଇଥାଏ ।

ଏବେ କିନ୍ତୁ ସବୁ ବିପରୀତ ହେଲାଣି କଳି କାଳରେ । ମନ୍ତ୍ରୀଙ୍କ ନାଆଁ ଯଦି ଏତଲାରେ ଅଛି ତାହାଲେ ଥାନା ବାବୁ ଏତଲା ରଖିବେ ନାହିଁ । ମନ୍ତ୍ରୀଙ୍କ ନାଆଁ ଥାଇ ମୁଦେଇ କରିବାକୁ ମୁଦାଲା ଓକିଲ ବି ଅରାଜି । ଅନ୍ୟ ପକ୍ଷରେ ମନ୍ତ୍ରୀଙ୍କ ନାଆଁ ଥିବା ମୁଦେଇ ପକ୍ଷର ଓକିଲ ନହେବାକୁ ମଧ୍ୟ ଓକିଲ ସଂଘୀୟ ପରାମର୍ଶ ।

ସେହିପରି ଧରନ୍ତୁ ମନ୍ତ୍ରୀଙ୍କ ବନ୍ଧୁ ମନ୍ତ୍ରୀଙ୍କ ସାଙ୍ଗ ମନ୍ତ୍ରୀଙ୍କ ପରିବାର ଲୋକେ ଯାହା ଯେଉଁଠି ଯେଉଁ ସମ୍ବିଧାନ ବାହାରେ ଅସାମ୍ବିଧାନିକ କାର୍ଯ୍ୟ କେତେ କଲେ ସେଥିପାଇଁ ଷଣ୍ଢକୁ ପଘା ନାହିଁ ରାଣ୍ଡକୁ ନଗା ନାହିଁ ନୀତିରେ ଚଳଯିବ ।

ଭୋଟ୍ ସମୟରେ ଭୋଟ୍ ବାକ୍ସ ଯଦି ମନ୍ତ୍ରୀଙ୍କ ଉପସ୍ଥିତିରେ ହରଣଚାଳ ହେଲା ତା'ହାଲେ ବି ନିର୍ବାଚନୀ ଶାସନ କର୍ତ୍ତାଗଣ ଚୁପ୍ ରହିବେ । ଭିଜିଲାନ୍ସ ହେଉ କି କ୍ରାଇମବ୍ରାଞ୍ଚ ହେଉ ଯେଉଁଠି ମନ୍ତ୍ରୀଙ୍କ ସଂପୃକ୍ତିର ଗନ୍ଧ ଆସିବ ସେଠି ସବୁ କେମିତି ଗୋଟେ ଗୋଳିଆ ମେଳିଆ ହୋଇଯାଏ । ଯାହାକୁ ଆମ୍ଭେ ସାଦା କଥାରେ ଗୋଳମାଳିଆ ବା ଗଣ୍ଡଗୋଳିଆ କହିପାରିବା ।

ମନ୍ତ୍ରୀ ଯାହାକୁ ଚାହିଁବେ ତାକୁ ବଧୂ ପୁତ୍ରବଧୂ ଧର୍ମ କନ୍ୟା କରିପାରିବେ । ଏଥିରେ କନ୍ୟାର ସ୍ୱୀକୃତି ଥାଉ କି ନଥାଉ ଧରି ନିଆଯିବ କନ୍ୟା ନିଶ୍ଚିତ ବଶମ୍ବଦ ରହିବ । ସେ ବେଦୀରେ ହେଉ କି ଡାକ ବଙ୍ଗଳାରେ ହେଉ ।

ତେବେ ମନ୍ତ୍ରୀଙ୍କ ନାଆଁ ବେଳେବେଳେ ଭୋଟର ଲିଷ୍ଟରେ ନଥାଏ । ବେଳେବେଳେ ମଧ୍ୟ ମନ୍ତ୍ରୀଙ୍କ ବୟସ ୮୧ (ଏକାଅଶୀ) ସ୍ଥାନରେ ୧୮ ହୋଇଥାଏ । ଏହି ସମୟରେ ବୃହସ୍ପତି ଚତୁର୍ଗୁଣ-ରେ ମନ୍ତ୍ରୀଙ୍କ ମନଟା ନିଶ୍ଚୟ କୁତୁକୁତୁ ହେଉଥିବ ।

# ଭାଲେଣ୍ଟାଇନ୍ ଡେ ବନାମ ସାବିତ୍ରୀ ବ୍ରତ

ଫେବୃୟାରୀ ୧୪ ତାରିଖକୁ ଆଜିକାଲିର ପ୍ରେମିକ ପ୍ରେମିକା ପ୍ରେମ ରୂପେ ବେଶ ଧୂମ୍‌ଧାମରେ ପାଳନ କରୁଥିବାର ଦେଖାଯାଏ । ଏହି ଦିବସଟାକୁ ସହରର ପାର୍କ, ରେଷ୍ଟୋରାଂ ଯେମିତି ଖୁବ୍ ଆଗ୍ରହରେ ଅନାଇଥାଏ । କାରଣ ଏହି ଦିନରେ ପାର୍କର ଘାସ ପଡ଼ିଆରେ, ଫୁଲଗଛ ଉହାଡ଼ରେ ପ୍ରେମୀ ଯୁଗଳଙ୍କର ପରସ୍ପର ଆଲିଙ୍ଗନ ବଦ୍ଧ ରୂପ ଦେଖି ଦେଖି ଆଖିବି ଲାଜରେ ବୁଜି ହୋଇଯାଏ । ହୋଟେଲ ବାଲାଏ ଏହି ଦିନ ମଧ୍ୟ ଖୁବ୍‌ମଉଜିଆ ଖାଦ୍ୟ ପାନୀୟ ଯୋଗାଡ଼ କରି ଯୁବକ ଯୁବତୀଙ୍କ ପାଇଁ ମଉଜିଆ ନାଚ ଗୀତରେ ଖୋରାକ ଯୋଗାଉଥାନ୍ତି । କମ୍ପାନୀ ମାନେ ମଧ୍ୟ ମନ ମତାଣିଆ ସଜ୍ଜିତ କରି ଭାଲେଣ୍ଟାଇନ୍ ଛବିଳ କାର୍ଡ ବିକ୍ରୀର ସୁବ୍ୟବସ୍ଥା କରିଥାନ୍ତି । ମୋଟ ଉପରେ ସେଠି ଗୋଟେ କଥା ମନକୁ ଆସେ ଆମ ଯୁବଗୋଷ୍ଠୀ ଏଇ ଭାଲେଣ୍ଟାଇନ୍‌ଙ୍କ ବିଷୟରେ କିଛି ଜାଣିଛନ୍ତି ତ । ମୋ ମତରେ ଭାଲେଣ୍ଟାଇନ୍‌ଙ୍କ ପ୍ରତି ସହାନୁଭୂତି ଦେଖାଇ ଏକ ଶୋକାକୁଳ

ପରିବେଶ ସୃଷ୍ଟି କରି ତାଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଦେବା ବୋଧେ ଅଧିକ ଶ୍ରେୟସ୍କର ହୁଅନ୍ତା । ବରଂ ଏଇଠି ଆଉ ଗୋଟିଏ କଥା ମନକୁ ଆସୁଛି, ଆମର ଉଶୃଂଖଳ ପ୍ରେମୀ ଯୁଗଳ ଏଇ ଦିବସଟିକୁ ପାଳନ କରିବାକୁ ବଡ଼ ବିଶୃଙ୍ଖଳ। ହେଲେ ଥରେ ଭାବୁଛନ୍ତି କି ଆମ ପ୍ରାଚ୍ୟ ପରମ୍ପରାର କଥା ।  ନା ବୋଧେ ନୁହେଁ, ଆମେ ଆଜି ସବୁ କ୍ଷେତ୍ରରେ ପାଶ୍ଚାତ୍ୟ ଆଡ଼କୁ ଗତି କରୁଛେ । ଭାବିଲେ ଦେଖି ଆମର କେଦାର ଗୌରୀ ଠାରୁ ଅଧିକ ନିଷ୍ଠାପର ପ୍ରେମୀ ଯୁଗଳ ଆଉ କେହି ଅଛନ୍ତି । ଆମ ଦୁଷ୍ମନ୍ତ ଶକୁନ୍ତଳା ଠାରୁ ଅଧିକ ଦାୟିତ୍ୱ ସଂପନ୍ନ ପ୍ରେମିକ ପ୍ରେମିକା କେହି ଅଛନ୍ତି । ସବୁଠୁ ତାତ୍ପର୍ଯ୍ୟପୂର୍ଣ୍ଣ ଉକ୍ତି ହେଉଛି ପ୍ରେମ ସମ୍ବନ୍ଧରେ ଶ୍ରୀ ଅରବିନ୍ଦଙ୍କ ସାବିତ୍ରୀ କାବ୍ୟରେ- ପ୍ରେମହିଁ ମୃତ୍ୟୁ ଜୟୀ ଉକ୍ତିଟି । ଏଇଠି ସାବିତ୍ରୀ ମହାକାବ୍ୟରୁ ସାବିତ୍ରୀ ସତ୍ୟବାନ କଥା ସ୍ୱତଃ ମନକୁ ଆସେ । ଭାବିଲ ଦେଖି କେତେ ତ୍ୟାଗ ସାବିତ୍ରୀଙ୍କ ପ୍ରେମର ସାଧନାରେ । ସ୍ୱୟଂ ଯମରାଜ ମଧ୍ୟ ହାର ମାନିଗଲେ ନା ସତୀତ୍ୱ ପାଖରେ । ହେ ମୋର ଯୁବକ-ଯୁବତୀ (ପ୍ରେମ ପାଗଳ) ଗଣ ! ଇଟାଲୀୟ ଭାବଧାରାର ଭାଲେଣ୍ଟାଇନ୍ ମଉଜ ମଜଲିସ୍‌ରେ ନମାତି ଭାରତୀୟ ପ୍ରେମର ଭଲ ପରମ୍ପରା ରକ୍ଷା କରିବାରେ ବ୍ରତୀ ହୁଅ । ତୁଚ୍ଛ ଦେହଜ ପ୍ରେମରେ ମାତି ନଯାଇ ନିଷ୍କଳଙ୍କ ନିଷ୍କପଟ ଶାଶ୍ୱତ ପ୍ରେମ ଚିନ୍ତନରେ ନିଜକୁ ବୁଡାଇ ରଖ ।

# ଗୋଦରା କୋଡ଼େ ଯେତେ......

**ଗୋ**ଟାଏ କଥାଅଛି ଗୋଦରା ତାଡ଼େ ଯେତେ ମାଡ଼େ ସେତେ । ଅର୍ଥାତ୍ ସେ ଗଣତି ବା ଫାଉଡାରେ ଯେତିକି ମାଟି ତାଡ଼ିଚାଲେ ତାର ଗୋଡ଼ ଗୋଦରା ହୋଇଥିବାରୁ ସେତିକି କାହିଁକି ବେଳେବେଳେ ତାଡ଼ିବା ଠୁଁ ମାଡ଼ିବା ତାର ନିଅଣ୍ଟ ପଡ଼େ ।

ଏବେ ଗାଆଁ ଗହଳିରେ ପ୍ରଧାନମନ୍ତ୍ରୀଙ୍କ ଗ୍ରାମ୍ୟ ସଡକ ଯୋଜନା ଅବସ୍ଥା ଠିକ୍ ସେହିପରି ଅବସ୍ଥାରେ ପହଞ୍ଚିଛି । ଶୁଣାଯାଏ ଆମ ରାଜ୍ୟରେ ୨୭ ହଜାର ୬ଶହ ୬ଟି ଗାଆଁ ଦାଣ୍ଡକୁ କଂକ୍ରିଟ୍ ରାସ୍ତାରେ ପରିଣତ କରାଯାଇଛି । ଏହାର ଲମ୍ବ ପ୍ରାୟ ୬୧୧୩ କି. ମି. । ପୁଣି କୁହାଯାଇଛି ଏଇବର୍ଷ ଶେଷସୁଦ୍ଧା ୯୫୮୨ ଗାଆଁ ଦାଣ୍ଡକୁ ପକ୍କା ରାସ୍ତାରେ ପରିଣତ କରାଯିବ ।

ଏ ସବୁ ଶୁଣିଲେ ଛାତି କୁଣ୍ଢେମୋଟ ହୋଇଯାଉଛି । ମନ ଆନନ୍ଦରେ କୁରୁଳି ଉଠୁଛି । ବୋଧହୁଏ ଆମ ଗାଁ ଛୁଆଏ ଆଉ ଧୂଳି ଟିକେ ପାଇବେ ନାହିଁ । ଗାଆଁ ଦାଣ୍ଡରେ ଖେଳିବା ପାଇଁ । ଗାଆଁରେ ଆଉ ଧୂଳି ଜନିତ ପ୍ରଦୋଷଣ ରହିବ ନାହିଁ ।

ହେଲେ ଆଜ୍ଞା ମୁଁ ମୋ ଗାଆଁ କଥା କହୁଛି । ମୋ ଗାଆଁରେ ଏବେ ମୂଳ ପ୍ରଧାନ ରାଜପଥଟି କେଉଁଠି ପାହାଡ଼ ତ କେଉଁଠି ଦରିଆ ଏହି ଅବସ୍ଥାରେ ଅଛି । ଖାଲ ଢିପରେ ଚାଲି କିଏ କେତେବେଳେ ପଡୁଛି ତ କିଏ କାଉପରେ ଗାଡ଼ି ଚଢ଼େଇ ଦେଉଛି ।

ଏବେ କଂକ୍ରିଟ୍ ରାସ୍ତାଟି ଆସି ମୂଳ ରାସ୍ତାକୁ ଯୋଗ କରିଛି । କଂକ୍ରିଟ୍ ରାସ୍ତାଟି ଯେମିତି ଚିକ୍କଣ ସେମିତି ଉଚ୍ଚା ହୋଇଛି ଫଳରେ ମୂଳ ରାଜପଥଟିରେ ଆଣ୍ଠୁଏ ପାଣି ଜମି ରହିଛି । ବେଶୀ ବର୍ଷାହେଲେ ଏହି ପାଣିର ପତନ ହୁ ହୁ ବଢି ଚାଲିଛି । ଏଣୁ ପଥଚାରୀଙ୍କ ଅବସ୍ଥା ଅନୁମାନ କରୁଥିବେ । ପ୍ରତିଦିନ ଏଇ ସଂଯୋଗ ସ୍ଥଳରେ ଝଗଡ଼ା ଝାଣ୍ଟି ଆଉ ମାଡ଼ପିଟ୍ ଭଳି ଅବସ୍ଥା ସାଙ୍ଗକୁ ଦୁର୍ଘଟଣା ମଧ୍ୟ ବଢ଼ି ଚାଲିଛି ।

ଏଣୁ ସରକାର ବାହାଦୂର ଗ୍ରାମ୍ୟ କଂକ୍ରିଟ୍ ରାସ୍ତା କରନ୍ତୁ ଆନନ୍ଦର କଥା – କିନ୍ତୁ ଜଳ ନିଷ୍କାସନ ବ୍ୟବସ୍ଥା ବି କରନ୍ତୁ । ନଚେତ୍ ଏହି ରାସ୍ତା ଯମଯନ୍ତାରେ ପରିଣତ ହେବା ସାର ।

✷

# ପୁରସ୍କାର ପ୍ରକାର ଭେଦ

ପୁରସ୍କାର ପଥ ଶ୍ରେଣୀ କୋଠରୀଠୁଁ ଆରମ୍ଭ କରି ଆସେମ୍ଲି ପାର୍ଲ୍ୟାମେଣ୍ଟ ଯାଏ ଏବେ ଲମ୍ବି ଚାଲିଛି । ଆମେ ସବୁ ଛୁଆ ବେଳେ ପ୍ରାଇମେରୀ ଶ୍ରେଣୀରେ ପଢୁଥିବା ବେଳେ ଶିକ୍ଷକ ଭଲ ପାଠ ପଢ଼ାପାଇଁ ବାଚନିକ ପୁରସ୍କାର ଧନ୍ୟବାଦ, ଖୁବ୍ ଭଲ ବାଃ ବାଃ କହି ଉତ୍ସାହିତ କରୁଥିଲେ । କେହି କେହି ଭଲ ଭଲ ଛବି ପତ୍ର ପତ୍ରିକାରୁ କାଟି ଦେଉଥିଲେ । ମୋତେ ଦ୍ୱିତୀୟ ଶ୍ରେଣୀରେ ମାନସାଙ୍କ ପାଇଁ ଦେଇଥିବା ପୁରସ୍କାର ସ୍ୱରୂପ ସୁନ୍ଦର ଛବିଟିଏ ବି କୋଉଁଠି ସାଇତା ରହିଛି ।

ତେବେ ଓଡ଼ିଶାରେ ଏବେ ସାରସ୍ୱତ ପୁରସ୍କାର ସଂଖ୍ୟା ବୃଦ୍ଧି ପାଉଛି । ଯଦିଓ ପ୍ରତ୍ୟେକ ପତ୍ର ପତ୍ରିକା ସମ୍ପାଦକ ବା ସମ୍ପାଦିକା ନିଜର କ୍ଷତି ଆଉ କ୍ଷତିରେହିଁ ପତ୍ରିକା ଚାଲିଛି ବୋଲି କହିଥାନ୍ତି । ଓଡ଼ିଶା ସାହିତ୍ୟ ଏକାଡେମୀ, ସଂଗୀତ ନାଟକ ଏକାଡେମୀ ପରି କେନ୍ଦ୍ର ସାହିତ୍ୟ ଏକାଡେମୀ, କେନ୍ଦ୍ର ସଂଗୀତ ନାଟକ ଏକାଡେମୀ ମଧ୍ୟ ଯଥାକ୍ରମେ ପ୍ରାଦେଶିକ ଓ ଜାତୀୟ ସ୍ତରରୁ ପ୍ରତିଭା ଚୟନ କରିଥାନ୍ତି ଓ ପୁରସ୍କାର ଦେଇଥାନ୍ତି । ତେବେ ଜ୍ଞାନପୀଠ ପୁରସ୍କାର ଭଳି ଓଡ଼ିଶାରେ ସାହିତ୍ୟ ଭାରତୀ ଭଣ୍ଡାର, ସମ୍ମାନ ପରି ବହୁ ପ୍ରତିଷ୍ଠିତ ବେସରକାରୀ ପୁରସ୍କାର ମୂଲ୍ୟ ସରକାରୀ ପୁରସ୍କାର ମୂଲ୍ୟ (ଅର୍ଥ ଅନୁସାରେ) ଠୁ ଖୁବ୍ ବେଶୀ ।

ସେ ଯାହାହେଉ ଏହି ପୁରସ୍କାରରେ ବେଳେ ବେଳେ ମଜା ମଜା ଘଟଣା ଘଟିଥାଏ । କୋଉଠି ଏକ ସଂସ୍ଥାରେ ଭାଇ ଭଉଣୀ ସମ୍ବର୍ଦ୍ଧିତ ହୁଅନ୍ତି । କେଉଁଠି ସ୍ୱାମୀ ସ୍ତ୍ରୀ ଯୁଗଳ ବନ୍ଦୀ ଭାବେ ସମ୍ମାନିତ ହୁଅନ୍ତି । ବେଳେ ବେଳେ ଦେଖାଯାଏ ବିଗତ ପ୍ରେମିକଟି ଯଦି ପୁରସ୍କୃତ ହୁଏ ତେବେ ସେ ଧରା ଧରି କରି ତାର ବୃଦ୍ଧା ପ୍ରେମିକାଟି ପାଇଁ ପୁରସ୍କାର ଦିଆଇବା ପାଇଁ ଚୟନ କର୍ତ୍ତାଙ୍କୁ ପ୍ରଭାବିତ କରିଥାଏ । ବେଳେ ବେଳେ ସଂଗୀତଜ୍ଞଟି ସମ୍ମାନିତ ହେଉଥିଲେ ସେ ତାର ପ୍ରିୟ ଗୀତିକାରକୁ ସମ୍ମାନିତ କରିବା ପାଇଁ ପ୍ରସ୍ତାବ କରିଥାଏ ।

ତେବେ ସବୁଠୁ ବିପଜ୍ଜନକ ଧାରାଟି ହେଲା ଏବେ କେତେକ ସଂସ୍ଥା କିଛି ଅର୍ଥ ପ୍ରତିଭାଧରଙ୍କ ଠୁ ସଂଗ୍ରହ କରି ମାଛ ତେଲରେ ମାଛ ଭାଜିଲା ପରି ପ୍ରତିଭାଧରଙ୍କ ଅର୍ଥରେ ପ୍ରତିଭାଧରଙ୍କୁ ସମ୍ମାନିତ କରୁଛନ୍ତି । ଏହି ପୁରସ୍କାର ବ୍ୟବସାୟରେ ଲାଭ ବି କିଛି କିଛି ହେଉଛି । ଏଣୁ ଏବେ ଏଇ ଧରାଧରି ପୁରସ୍କାର ଦିନେ ମରାମରି ପୁରସ୍କାରରେ ପରିଣତ ହେବନି ତ ।

✷

# ବିରୋଧାଭାସ

ଧୌମ୍ୟ, କୃଷ୍ଣ, ବଳରାମ ପରି ଶିଷ୍ୟଙ୍କୁ ଆଶ୍ରମରେ ଶିକ୍ଷାଦାନ କରିଥିଲେ । ବାଲ୍ମୀକି ଲବକୁଶଙ୍କୁ ନିଜ ଆଶ୍ରମରେ ରଖି ରାଜନୀତି ଠାରୁ ଆରମ୍ଭ କରି ଅସ୍ତ୍ର ଶସ୍ତ୍ର ବିଦ୍ୟା ଶିକ୍ଷା ଦେଇଥିଲେ । ଏପରିକି ସୁଲଳିତ କଣ୍ଠରେ ରାମାୟଣ ଗାନ ଶିଖି ରାମଚନ୍ଦ୍ରଙ୍କ ରାଜସଭାରେ ଅଶ୍ୱମେଧ ଯଜ୍ଞ ବେଳେ ରାମାୟଣ ଗାନ କରି ସଭାସଦ ଗଣଙ୍କୁ ମୁଗ୍ଧ କରିଥିଲେ ।

ଗୁରୁକୁଳ ମାନଙ୍କରେ ନୀତିଶିକ୍ଷା ଆଉ ବ୍ରହ୍ମଚର୍ଯ୍ୟ ଶିକ୍ଷା ଥିଲା ମୁଖ୍ୟ ପ୍ରସଙ୍ଗ ।

ଏବେ କିନ୍ତୁ ଆଶ୍ରମର ବାବାମାନେ ଶିଷ୍ୟ ଶିଷ୍ୟା ମାନଙ୍କୁ ଯୌନ ଶିକ୍ଷା ଦେବାରେ ଧୂରୀଣ । ଆଶ୍ରମକୁ ତଲାସି କଲେ ଏବେ ପୁରାଣ ପୋଥି ଗୀତା ଭାଗବତ ତ ମିଳିବନାହିଁ, ମିଳିବ କଣ୍ଡୋମ, ଗର୍ଭନିରୋଧ ବଟିକା, କିଛି ପ୍ୟାଣ୍ଟି, କେଇ ହଳ ବ୍ରା ।

ଏପରିକି ବିଦ୍ୟାଳୟ, ମହାବିଦ୍ୟାଳୟର ଶିକ୍ଷୟତ୍ରୀ ବା ଅଧ୍ୟାପିକା ନିଜର ଛାତ୍ରୀଙ୍କୁ ଷ୍ଟାର ହୋଟେଲରେ ଦେହ ବ୍ୟବସାୟ ପାଇଁ ବାଧ୍ୟ କରୁଛନ୍ତି ।

ସେଇ ଗୁରୁ – ସେଇ ଶିଷ୍ୟ ଶିଷ୍ୟା, ଅଥଚ କେତେ ବି[illegible]ଧାଭାସ ।

ଶ୍ରବଣ କୁମାର ଅନ୍ଧ ପିତା ମାତାଙ୍କୁ କାନ୍ଧରେ ଭାର କରି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇ ଯାଉଥିଲା । ଟିକେବି ମନରେ ଦୁଃଖ ନରଖି ପିତାମାତାଙ୍କର ସେବା ଯତ୍ନ

କରୁଥିଲା । ଏବେ ଶୁଣାଯାଏ ଚୀନ୍‌ର ଗୋଟିଏ ଲୋକ ନିଜର ବୁଢ଼ୀମାକୁ ପିଠିରେ ପକାଇ ଚାଲି ଚାଲି ବେଜିଂ ଆସୁଛନ୍ତି ।

ଜଗନ୍ନାଥ ଦାସ ମାଆଙ୍କ ମନବୁକଷ୍ଟ ଦୂରପାଇଁ ଖାଣ୍ଟି ଓଡ଼ିଆରେ ଭାଗବତ ଲେଖିଥିଲେ ।

ଅଥଚ ଆଜି ପୁଅ ନିଜର ବୁଢ଼ା ବାପ ମାଆଙ୍କୁ ଝାଟିମାଟି ଘରେ ଗାଆଁରେ ଛାଡ଼ି ନିଜେ ରାଜଧାନୀରେ ଛଅ –ବଖରିଆ ଘରେ ବିଳାସ ବ୍ୟସନରେ କାଳକାଟୁଛି । ଦେଖିଲେ ଇୟେ କି ବିରୋଧାଭାସ ।

○

# ପତ୍ନୀ ଓ ପତ୍ନୀଙ୍କ କନିଷ୍ଠା ଭଗ୍ନୀ

ପତ୍ନୀ ସର୍ବଦା ପତିଙ୍କର ପ୍ରିୟ ରହିନପାରେ । କିନ୍ତୁ ପତ୍ନୀଙ୍କର କନିଷ୍ଠା ଭଗ୍ନୀ ସର୍ବଦା, ସର୍ବଦା ପତିଦେବଙ୍କର ପ୍ରିୟ । ଏ କଥାଟି ବହୁବାର ସତ୍ୟବୋଲି ପ୍ରମାଣିତ ହେବା ଆମେ ଜୋର କରି କହିପାରୁ ।

ଅନେକ ସମୟରେ ଦେଖାଯାଏ ବିବାହର ପ୍ରଥମ ବର୍ଷ ବା ୨ୟ ବର୍ଷ ଅଧାଅଧି ବା ୩ୟ ବର୍ଷ ଆରମ୍ଭଯାଏ ପତ୍ନୀ ଜଣକ ପତିର ପ୍ରିୟ ହୋଇଥାଏ । ଏହି ସମୟ ମଧ୍ୟରେ ପତ୍ନୀଦେବୀ ଜନନୀ ଭୂମିକା ଆଡ଼କୁ ଅଗ୍ରସର ହୁଅନ୍ତି । ତେଣେ ପିତ୍ରାଳୟ ବା ପତ୍ନୀଙ୍କର ଶ୍ୱଶୁରାଳୟରେ ପତ୍ନୀଙ୍କର କନିଷ୍ଠା ଭଗ୍ନୀ ମଧ୍ୟ କ୍ରମଶଃ ଯୌବନର ପାଦଦେଶରେ ପଦାର୍ପଣ କରିଥାଏ ।

ଆସନ୍ନ ପ୍ରସବ ବଡ ଭଉଣୀକୁ କାମରେ ସାହାଯ୍ୟ କରିବା ପାଇଁ ସେ ଚାଲିଆସେ । ଏହି ସୁଯୋଗକୁ ଭଗ୍ନି ପତି ମଧ୍ୟ ଅପେକ୍ଷା କରିଥାନ୍ତି । ଭଗ୍ନୀପତି ତ ସହଜେ ଆସନ୍ନ ପ୍ରସବ ପତ୍ନୀ ପ୍ରତି ବିମୁଖ ହୋଇ ରହିଥାନ୍ତି ଏତେ ଶୀଘ୍ର ସେ ଜନନୀ ଆଡ଼କୁ ଅଗ୍ରସର ହେଉଛନ୍ତି ଦେଖି ସତେ ଯେମିତି ପତ୍ନୀ ଜନନୀ ହେବା ମୂଳରେ ପତି ଆଦୌ ଦାୟୀ ନୁହନ୍ତି ।

ଏହାପରେ ଭଗ୍ନୀ ପତି ଓ ଶାଳୀଙ୍କ ମଧ୍ୟରେ ହାସ ପରିହାସରୁ ରଙ୍ଗରସ ଏପରିକି ରତିରସ ଆଡ଼କୁ ଦୁହିଁଙ୍କର ମନ ଗଲାଯାଏ । ଆମ ସାମାଜିକ ବ୍ୟବସ୍ଥା ଅଜା ନାତୁଣୀ, ଶାଳୀ ଭିଣୋଇ ସଂପର୍କକୁ ଏତେ ଗଂଯାଳ କରି ଦେଇଛି ଯେ ସେଥିରେ ବେଳେ ବେଳେ ଏଇ ରସାଳରୁ ମହାକାଳ ଜନ୍ମ ହୋଇଥାଏ ।

ଏଥିପାଇଁ ଆମେ ଅନେକ ସମୟରେ ଖବର କାଗଜ ପୃଷ୍ଠାରେ ଶାଳୀ ଭିଣୋଇର ସଂପର୍କ ଯୋଗୁଁ ପତ୍ନୀ ବିଚରା ସର୍ବହରା ହେବା ଅଥବା ଆତ୍ମହତ୍ୟା କରିବାର ନଜିର ଭରପୁର ଦେଖିବାକୁ ମିଳୁଛି ।

ଯୁଗ ଥିଲା ସାମାଜିକ ବ୍ୟବସ୍ଥାରେ ଦୃଢ଼ ଅନୁଶାସନ ଯୋଗୁଁ ଶାଳୀ ଭିଣୋଇଙ୍କ ଥଟ୍ଟା ତାମସା କେତେବେଳେ ଲକ୍ଷ୍ମଣ ରେଖା ଡେଇଁ ନଥିଲା । ହେଲେ ଆଜି ସମାଜରେ ଆଧାତ୍ମିକ ଅପେକ୍ଷା ଜୈବିକତାର ପ୍ରାଧାନ୍ୟ ବେଶୀ । ଏଣୁ ପ୍ରତ୍ୟେକ ବାପା ମାଆ ନିଜର ବିବାହିତ ବଡ ଝିଅ ଘରକୁ ଅବିବାହିତ ସାନ ଝିଅକୁ ପଠେଇବା ପୂର୍ବରୁ ଖୁବ୍ ଚିନ୍ତା କରିବା ଆବଶ୍ୟକ ।

○

# କୀର୍ତ୍ତନ : ଫିର୍ତ୍ତନ

"ହରେ କୃଷ୍ଣ ହରେ ରାମ ନିତାଇ ଗୌର ରାଧେ ଶ୍ୟାମ"

ଏହା କହିଲେ ଆମେ ସହଜରେ ଜାଣିନେଉ ଏହା କୀର୍ତ୍ତନ ବୋଲି । ନଦୀୟା ନବଦ୍ୱୀପରୁ ହରିନାମ ଧରି ଧରି ହରି ପ୍ରେମରେ ପାଗଳ ହୋଇ ଧାଇଁ ଆସିଥିଲେ ପୁରୀ ଧାମ ଯାଏ ଗୌରାଙ୍ଗ ମହାପ୍ରଭୁ । ଏହି କୀର୍ତ୍ତନରେ ପାଗଳ ହୋଇଥିଲେ ପ୍ରତାପ ରୁଦ୍ର ଦେବଙ୍କ ମନ୍ତ୍ରୀ ରାମାନୁଜ । ସକାଳେ ସଂଜେ ମନ୍ଦିରରେ ବା ଭାଗବତ ଟୁଙ୍ଗୀରେ କୀର୍ତ୍ତନ ପ୍ରାୟ ହୁଏ । ତେବେ ଏ ଯୁଗରେ କାର୍ତ୍ତିକ ମାସରେ ଏକ ପ୍ରକାର ଅଜବ କୀର୍ତ୍ତନ ଧାରା ଶୁଣାଯାଏ । ଭୋଲା ବାବା ପାର କରେଗା କାହୁଁ କାହୁଁ କେହି କେହି ଭୋଲାବାବା ପ୍ୟାର କରେଗା ମଧ୍ୟ କହିବାର ଶୁଣାଯାଏ । ଆମେ ଏହାକୁ କୀର୍ତ୍ତନ ନ କହି ଫିର୍ତ୍ତନ କହିଲେ ଭୁଲ ହେବ ନାହିଁ ।

ସେହିପରି ରାଧାକୃଷ୍ଣଙ୍କୁ ନେଇ ୀକ ପ୍ରକାର କ୍ୟାସେଟିୟ ନୂତନ କୀର୍ତ୍ତନ ସୃଷ୍ଟି କରାଯାଇଛି । ଏହାକୁ ମଧ୍ୟ ଫିର୍ତ୍ତନ କୁହାଯାଇପାରେ । ଲୋ ରାଧା– ଲୋ ରାଧା – ଯମୁନାକୁ ଯିବା ପାଇଁ ନାଇଁ ଆଉ ବାଧା । ଆଗେ ଥିଲା ବାଟେ କଣ୍ଟା ଏବେ ପିଚୁ ରାସ୍ତା । ଯମୁନା ପାର ହେବାକୁ ନେବ ଭଡା ଶସ୍ତା । ଏହିଭଳି କେତୋଟି ଧାଡ଼ି ଯୋଡ଼ି ଏବେ ଏବେ ନୂଆ ଧରଣର ଫିର୍ତ୍ତନ ସୃଷ୍ଟି ହେଉଛି । ଆଜିକାଲି ଗୀତର ଯେମିତି ରି–ମିକ୍ସ ବା ଫିଉଜନ୍‌ର ବ୍ୟବସ୍ଥା ହେଉଛି ଆମ ଏଇ କୀର୍ତ୍ତନରେ ଏଇ ଫିର୍ତ୍ତନ ଧାରା ଯୋଗ ହେଲାଣି । ଶସ୍ତା ଲୋକପ୍ରିୟ ଚଳଚ୍ଚିତ୍ର ସଂଗୀତର ତାଳରେ ଏବେ କୀର୍ତ୍ତନ ମଣ୍ଡଳୀ ଫିର୍ତ୍ତନ ଗାଇବାର ଶୁଣାଯାଏ । ଏପରିକି ଭକ୍ତି ଭୋଳରେ ପ୍ରାରମ୍ଭରୁ କୀର୍ତ୍ତନ ଗାଇ ଗାଇ

ଉଦର ଜ୍ୱାଳା ଆରମ୍ଭ ହେଲେ ଅରୁଆ ଅନ୍ନ ହାଣ୍ଡି ବା ହଣ୍ଡାରୁ ଗଳା ହେବା ମାତ୍ରେ ଖୋଳ କରତାଳର ଯେଉଁ ଦ୍ରୁତ ସଂଚାଳନ ଆରମ୍ଭ ହୁଏ, ସେତେବେଳେ କୀର୍ତ୍ତନର ବୈରାଗ୍ୟ ଧାରା ଫିର୍ତ୍ତନର ସୋମଧାରାକୁ ରୂପାନ୍ତରିତ ହୋଇଥାଏ ।

ଏବେ ଏବେ କୀର୍ତ୍ତନରେ ରାଧାକୃଷ୍ଣଙ୍କୁ ମଧ୍ୟ ନୂଆ ନୂଆ ବେଶ ପୋଷାକରେ ଦେଖିବାକୁ ମିଳେ । ଦିନେ ମୀରା ଗିରିଧାରୀଙ୍କ ପ୍ରେମରେ ପାଗଳିନୀ ହୋଇ ବୀଣାଧରି ଭାବ ବିହ୍ୱଳ କଣ୍ଠରେ ସିନା ଗାଇଥିଲେ – ମେରେ ତୋ ଗିରିଧାରୀ ଗୋପାଲ..... ହେଲେ ଏ ଯୁଗରେ ମୀରା ଜିନ୍ସ ପ୍ୟାଣ୍ଟ ପିନ୍ଧି ହାଲକା ହାଲକା ନିଶାରେ ପଞ୍ଚତାରକା ହୋଟେଲରେ ସତ୍ୟ ଶିବ ସୁନ୍ଦର ଫିଲ୍ମର ଗୀତ.... ହରେ ରାମା ହରେ କ୍ରୀଷ୍ଣା – ଗାଇ ଗାଇ ମାତାଲି ନୃତ୍ୟ କରୁଛି । ତେଣୁ ଏହାକୁ କୀର୍ତ୍ତନ ନ କହି ଫିର୍ତ୍ତନ କହିଲେ ଭୁଲ୍ ରହିଲା କେଉଠି ?

❐

# ମଣିଷ ଆଜି ପଶୁଠୁ ହୀନ

ଏବେ ଖବର କାଗଜରୁ ଗୋଟେ ମଜାଦାର ଖବର ପଢ଼ିବାକୁ ମିଳିଲା । ଖବରଟି ହେଲା ଜଣେ ୮୦ ବର୍ଷର ଅବିବାହିତ ବ୍ୟକ୍ତି ନିଜର ସମସ୍ତ ସମ୍ପତ୍ତି ସେ ନିଜର ପୋଷା ବିରାଡ଼ି ନାମରେ ଉଇଲ କରିଦେଇଛନ୍ତି । ଉଇଲ୍‌ରେ ସେ ଏଇ ବିରାଡ଼ିର ସମସ୍ତ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଦୃଷ୍ଟିରେ ରଖି ଏକ ଗୀର୍ଜାର କର୍ତ୍ତୃପକ୍ଷଙ୍କୁ ମାର୍ଫତଦାର କରିଛନ୍ତି ।

କଥାଟି ଶୁଣିବାକୁ ରୁଚିକର ହେଲେ ବି ଏହା ଭିତରୁ ଗୋଟିଏ କଥା ସହଜରେ ଅନୁମେୟ । ତାହା ହେଲା ମଣିଷ ଆଜି ମଣିଷକୁ ବିଶ୍ୱାସ କରୁନାହିଁ । ଲୋକଟି ସିନା ଅବିବାହିତ, ତାର ନିଜର ସ୍ତ୍ରୀ ପିଲା ପିଲି ନାହାନ୍ତି । କିନ୍ତୁ ତାର ପରିବାରର କେହିନା କେହି ଥିବେ । ସାଙ୍ଗ ମଧ୍ୟ ଥାଇ ପାରନ୍ତି । କିନ୍ତୁ ସେ ସମସ୍ତଙ୍କୁ ଉପେକ୍ଷା କରି ନିଜର ପୋଷା ବିଲେଇଟି ପାଇଁ ନିଜର ସମସ୍ତ ସମ୍ପତ୍ତି କାହିଁକି ଉତ୍ସର୍ଗ କରିଦେଲେ । ବୋଧହୁଏ ତାଙ୍କ ବିଚାରରେ ଏହି ପୋଷା ବିଲେଇଟି ସବୁଠୁ ବିଶ୍ୱସ୍ତ ।

ହଁ ଆଜ୍ଞା ଏବେ ଆମ ସମାଜକୁ ଦୃଷ୍ଟି ପକାଇଲେ ଏକଥା ସହଜରେ ପ୍ରମାଣିତ ହୋଇଥାଏ । ବୁଢ଼ୀ ମାଆର ବାର୍ଦ୍ଧକ୍ୟ ଭତ୍ତା ଗଣ୍ଡାକ ଲୁଟି ନେବା ପାଇଁ ଯୁବା ପୁଅ ଯେତିକି ବ୍ୟସ୍ତ; ରୁଗ୍ଣ ସ୍ୱାମୀକୁ ରୋଗଶଯ୍ୟାରେ ଛାଡ଼ିଦେଇ ପତ୍ନୀ ତା'ର ପୂର୍ବତନ ପ୍ରେମିକ ସଂଗେ

ନିଜ ଛୁଆଙ୍କୁ ଛାଡ଼ି ଫେରାର ହେବାରେ ସେତିକି ତତ୍ପର ।

କେଉଁଠି ସ୍ୱାମୀ ନଥିବାର ସୁଯୋଗ ନେଇ ଦୁଇ ଦିଅର ଭାଉଜଙ୍କୁ ଜୋର ଜବରଦସ୍ତ ଶାଶୁ ଶ୍ୱଶୁରଙ୍କ ସ୍ୱୀକୃତିରେ ଧର୍ଷଣ ତ କେଉଁଠି ଶ୍ୱଶୁର ମଧ୍ୟ ବଧୁଙ୍କୁ ଯୌନଶୋଷଣ ପାଇଁ ବାଧ୍ୟ କରିବା ଦୃଷ୍ଟାନ୍ତ ଆଜି ସମାଜରେ ବିରଳ ନୁହେଁ ।

ଅଚ୍ୟୁତାନନ୍ଦଙ୍କ ମାଳିକା ଅଥବା ଜଗନ୍ନାଥ ଦାସଙ୍କ ଭାଗବତରେ ଯେଉଁସବୁ ଘଟଣା ବର୍ଣ୍ଣନା କରାଯାଇଛି ଆଜି ତାହା ଗୋଟି ଗୋଟି ଘଟିବାକୁ ଯାଉଛି ।

ପ୍ରକୃତରେ ଆଜି ମଣିଷଟିଏ ଜଙ୍ଗଲରେ ହିଂସ୍ରପଶୁ ମେଳରେ ଯେତେ ସମୟ ନିରାପଦରେ ରହିପାରିବ ସହରର ରାଜରାସ୍ତାରେ ମଣିଷ ଚଳପ୍ରଚଳ କରୁଥିବା ଜଙ୍ଗଲରେ ସେତେ ନିରାପଦରେ ରହିପାରିବ ନାହିଁ ।

ଏଣୁ ପଶୁ ଆଜି ମଣିଷଠୁ ଗରୀୟାନ୍, ମହୀୟାନ୍ ।

## ୮

# ବିଚିତ୍ର ସମ୍ବାଦ ବନାମ ରୋଚକ ସମ୍ବାଦ

**ଖ**ବର କାଗଜ ପଢ଼ିବା ଏକ ଦୈନିକ ଜୀବନ ଜାପନରେ ଏକ ଅଂଶ ବିଶେଷ କହିଲେ ଭୁଲ ହେବନାହିଁ । ସକାଳୁ ସକାଳୁ ସହରୀ ଜୀବନରେ ବେଡ୍ ଟି ପାନ ସମୟରେ ସମ୍ବାଦ ପତ୍ର ଉପରେ ଆଖି ପକାଇ ନେବା ଅନେକ ଶ୍ରଦ୍ଧାଳୁ ପାଠକଙ୍କ ଅଭ୍ୟାସ । ଏପରିକି ମଫସଲରେ ମଧ୍ୟ ଏବେ ସମ୍ବାଦ ପତ୍ର ପ୍ରବେଶ ପ୍ରଶଂସନୀୟ ।

ତେବେ ସମ୍ବାଦ ପତ୍ରରେ ବିଭିନ୍ନ ପ୍ରକାର ସମ୍ବାଦ ପ୍ରକାଶ ପାଇଥାଏ । ବିଭିନ୍ନ କ୍ଷେତ୍ରରେ ରୁଚି ରଖୁଥିବା ପାଠକଙ୍କ ପାଇଁ । କିଏ ରାଶିଫଳ ପସନ୍ଦ କରେତ କିଏ ସୁନାରୂପା ଦରକୁ ଆଖି ପକାଇଦିଏ । କିଏ ସରକାରଙ୍କ ନୀତି ନିର୍ଦ୍ଧାରଣ ପ୍ରତି ଦୃଷ୍ଟିଦିଏ, କିଏ କେଉଁଠି ଆତ୍ମହତ୍ୟା କଲା କିପରି ଧର୍ଷଣ ହେଲା ଏ ସମ୍ବାଦ ପ୍ରତି ଗୁରୁତ୍ୱ ଦେଇଥାନ୍ତି ।

ତେବେ ଆମେ ଏଠାରେ ନିକଟରେ ପରିସମାପ୍ତି ଲାଭକରିଥିବା ମ୍ୟାଟ୍ରିକ୍ ପରୀକ୍ଷାର ଦୁଇଟି ରୋଚକ ସମ୍ବାଦ ପ୍ରତି ପାଠକଙ୍କ ଦୃଷ୍ଟି ଆକର୍ଷଣ କରୁଅଛି ।

ପ୍ରଥମଟି ହେଲା – ମୁଗପାଳ ହାଇସ୍କୁଲ ପରୀକ୍ଷା କେନ୍ଦ୍ରର ଡେପୁଟୀ ସୁପରିଟେଣ୍ଡେଣ୍ଟ

ପରୀକ୍ଷାର୍ଥୀଙ୍କ ଠାରୁ ଅର୍ଥ ଆଦାୟ କରି ପରୀକ୍ଷା ହଲରେ ସାହାଯ୍ୟ ଯୋଗାଇବାର ପ୍ରତିଶ୍ରୁତି ଦେଇଥିଲା । ମାତ୍ର ପରୀକ୍ଷା ନିୟନ୍ତ୍ରକ ମାନଙ୍କ କୋପଦୃଷ୍ଟି ଯୋଗୁଁ ପରୀକ୍ଷାର୍ଥୀଙ୍କୁ ପରୀକ୍ଷା ସମୟରେ ସାହାଯ୍ୟ ଯୋଗାଇ ନପାରି, ରାତ୍ରୀ ସମୟରେ ଆଲମିରାରୁ ସୁପରିଣ୍ଟେଣ୍ଡେଣ୍ଟଙ୍କ ଅଗୋଚରରେ ତାଲା ଭାଙ୍ଗି ଉତ୍ତର ଖାତାରେ ସେହି ଉତ୍ତର ଲେଖୁ ଲେଖୁ ପୋଲିସ୍ ହାବୁଡରେ ପଡି ଗିରଫ ହେଲେ ।

ଅନ୍ୟ ସମ୍ବାଦଟି ହେଲା ପରୀକ୍ଷା ହଲରେ ବଲାଙ୍ଗୀରର ଜଣେ ପନ୍ଦରବର୍ଷୀୟା ଛାତ୍ରୀ ହଠାତ୍ ଉଦର ଯନ୍ତ୍ରଣା ଅନୁଭବ କଲେ । ଯନ୍ତ୍ରଣା ଅସହ୍ୟ ହେବାରୁ ଡାକ୍ତରଖାନାକୁ ହଲ ସୁପରିଣ୍ଟେଣ୍ଡେଣ୍ଟ ପଠାଇଦେଲେ । ଡାକ୍ତରଖାନାରେ ଜଣାଗଲା ଉଦର ଯନ୍ତ୍ରଣାଟି ହେଉଛି ପ୍ରାକ୍ ପ୍ରସବ ଜନିତ ଯନ୍ତ୍ରଣା । ଅବଶ୍ୟ ଛାତ୍ରୀ ଜଣଙ୍କ ବିବାହିତା କି ଅବିବାହିତା ଏ ସମ୍ବାଦ ଏବେବି ବିବାଦପୂର୍ଣ୍ଣ ।

ସେ ଯାହାହେଉ ଦୁଇଟି ସମ୍ବାଦର ଦୁଇଟି କଥା ସୁସ୍ପଷ୍ଟ । ପ୍ରଥମଟିରୁ ଆମ ଶିକ୍ଷକ ସମାଜ ଛାତ୍ରଛାତ୍ରୀଙ୍କ ପ୍ରତି କେତେ ସହାନୁଭୂତିଶୀଳ ତାହା ପ୍ରତୀୟମାନ । ୨ୟ ସମ୍ବାଦରୁ ଆମର ପରିବାର ନିୟୋଜନ ସଂସ୍ଥାର ଏତେ ପ୍ରଚାର ପ୍ରସାର ସତ୍ୱେ କଣ୍ଡୋମ୍ ବ୍ୟବହାରର ସଫଳତା ଉପରେ ଏକ ପ୍ରଶ୍ନବାଚୀ ସୃଷ୍ଟି କରୁଛି । ଏପରିକି ଝିଅକୁ ୧୮ ବର୍ଷ ନହେଲେ ବିବାହ କରାଇବା ଆଇନ ବିରୁଦ୍ଧ ସ୍ଲୋଗାନର ମଧ୍ୟ ଅସଫଳତା ଜ୍ଞାପନ କରୁଛି । ଏଣୁ କ'ଣ କରିବା ! କ'ଣ କରିବା କପାଳରେ ସିନା କରମାରିବା ।

•

# ପାପ – ପୂଣ୍ୟ

ପାପ-ପୂଣ୍ୟ ଏ ଦୁଇଟି ଶବ୍ଦ ଖୁବ୍ ପାଖାପାଖି । ପାପ କହିଲେ ପୂଣ୍ୟ କଥା ଛାଆଁକୁ ମନକୁ ଆସେ । ପୂଣ୍ୟ କହିଲେ ପାପଟା ପାଖେ ପାଖେ ନୁଙ୍ଗୁରୁ ପୁଙ୍ଗୁରୁ ହୁଏ । ଆମ ସାଧାରଣ ମଣିଷଙ୍କ ସାଧାରଣ ଜୀବନ ଯାତ୍ରା ଭିତରେ ପାପ-ପୂଣ୍ୟ ଜାଆଁଳା ଭାଇ ପରି ହାତ ଧରା ଧରି ହୋଇ ପ୍ରାୟତଃ ଚାଲିଥାନ୍ତି । ଏପରିକି ବଡ ବଡ ମହାପୁରୁଷଙ୍କ ଜୀବନରେ ଏଇ ପାପ ପୂଣ୍ୟ କାୟା ପାଖେ ଛାୟା ପରି ଜଡି ରହିଥାନ୍ତି ।

ଆଚ୍ଛା କହିଲେ ରାମଚନ୍ଦ୍ର କେତେ ବଡ ପୂଣ୍ୟବନ୍ତ ପୁରୁଷ । ହେଲେ ନିଜର ପତ୍ନୀ ସୀତାଙ୍କୁ ସେ ଥରେ ଅଗ୍ନି ପରୀକ୍ଷା କଲେ ପୁଣି ଥରେ ନିର୍ବାସନ ଦଣ୍ଡ ଦେଲେ ପୁଣି ଥରେ...... । ନା ସୀତାଙ୍କର ଧୈର୍ଯ୍ୟ ରହିଲା ନାହିଁ ସେ ପାତାଳଗାମୀ ହେଲେ ।

ଏଣୁ ରାମଚନ୍ଦ୍ରଙ୍କର ଇୟେ କଣ ପାପ ନୁହେଁ । ଠିକ୍ ସେହିପରି ଯୁଧିଷ୍ଠିର ଭଳି ଧାର୍ମିକ ଓ ସତ୍ୟବାଦୀ ଅଶ୍ୱତ୍ଥମା ହତ ନରେ ବା କୁଞ୍ଜରେ କହିବାର ମାନେ ପାପ ନୁହେଁକି ।

ତେବେ ଆମ ରାଜନେତାମାନଙ୍କ ଜୀବନରେ ପାପ ଆଦୌନାହିଁ । ପୂଣ୍ୟ ସଦାବେଳେ ତାଙ୍କ ପାଖେ ପାଖେ ବଡିଗାର୍ଡ ପରି ରହିଛି । ବନ୍ୟା ଆସିବା ମାତ୍ରେ ସେମାନେ ରିଲିଫ ଡଙ୍ଗା ନେଇ ଜଳ ଘେରି ଗାଆଁରେ ହାଜର । ମରୁଡି ପଡିଲେ ବି ସେଇ ରିଲିଫ୍ ବଣ୍ଟନ ପାଇଁ ସେ ଆଗୁସାର । ଇନ୍ଦିରା ଆବାସ ଯୋଜନାରେ ଗରିବ ଲୋକଙ୍କୁ ଇନ୍ଦିରା ଆବାସ ଯୋଗାଇ ଦେବା ପାଇଁ ସେ ରାତିରେ ଶୋଇ ପାରନ୍ତି ନାହିଁ । ଆଦର୍ଶ କୂପ ଖନନ, ଆଦର୍ଶ ପୁଷ୍କରଣୀ ଖନନ, ଆଦର୍ଶ ବିଦ୍ୟାଳୟ ସ୍ଥାପନ । ଆଦର୍ଶ ମଧ୍ୟାହ୍ନ ଭୋଜନ ରନ୍ଧନ ଆଦର୍ଶ ପୋଷାକ ବିତରଣ ସବୁଠି ରାଜନେତାଙ୍କ କାର୍ଯ୍ୟରେ ପୂଣ୍ୟ ହିଁ ପୂଣ୍ୟ । ପାପ ଆଦୌ ନାହିଁ । ଯାହା କିଛି ପାପ କରନ୍ତି ତାଙ୍କର ଅନୁଗତମାନେ । କିନ୍ତୁ ସେ ନିଜେ ପାପର ଧାର ଧାରନ୍ତି ନାହିଁ ।

ବିକ୍ରମାଦିତ୍ୟ ଭଳି ଧାର୍ମିକ ଓ ନ୍ୟାୟବନ୍ତ ରାଜାଙ୍କ ପାଦ ଧୌତ ସମୟରେ ଟିକେ ଅଧୁଆ ଜାଗା ଦେଖି ଶନି ସିନା ପ୍ରବେଶ କରି ତାଙ୍କୁ ହନ୍ତସନ୍ତ କଲା । ଆମ ଏଇ ପାଞ୍ଚବର୍ଷିଆ ରାଜାମାନେ ନିର୍ବାଚନ ପରେ ଏତେ ଧନ କମାନ୍ତି ଯେ ପାପ ସେମାନଙ୍କୁ ଆଦୌ ସ୍ପର୍ଶ କରିପାରେନା ।

●



ଯାଜପୁର ଜିଲ୍ଲାର କୋରେଇ ଗ୍ରାମରେ ଜନ୍ମ ଗ୍ରହଣ କରିଥିବା ଗୀତିକବି, ଶିଶୁ ସାହିତ୍ୟିକ, ନାଟ୍ୟକାର, ନାଟ୍ୟଶିଳ୍ପୀ ନନ୍ଦକିଶୋର ସିଂହ ପାଠକ ମହଲରେ ବହୁ ଆଗରୁ ପରିଚିତ । ଏହି ପୁସ୍ତକଟି ପ୍ରକାଶ କରି ସେ ତାଙ୍କର ପ୍ରଚଳିତ ସାମାଜିକ ଧାରା ପ୍ରତି ବ୍ୟଙ୍ଗାତ୍ମକ ଦୃଷ୍ଟି ନିକ୍ଷେପ କରିଛନ୍ତି । ଫଳରେ ବ୍ୟଙ୍ଗକାର ଭାବେ ତାଙ୍କର ଅନ୍ୟ ଏକ ପରିଚୟ ପ୍ରତିପାଦିତ ହୁଏ ।

ସେ ବହୁ ଆଗରୁ ବ୍ୟଙ୍ଗାତ୍ମକ ରଚନାମାନ ପ୍ରକାଶ କରି ଆସୁଛନ୍ତି । ସେଗୁଡ଼ିକ ଓଡ଼ିଶାର ବିଭିନ୍ନ ସମ୍ବାଦ ପତ୍ର ଓ ପତ୍ରପତ୍ରିକାରେ ପ୍ରକାଶ ପାଇ ପାଠକୀୟ ଆଦର ଲାଭ କରିଛି ।

ଆସନ୍ତୁ ତାଙ୍କର ଅନ୍ୟ କେତୋଟି ପ୍ରକାଶିତ ପ୍ରମୁଖ ପୁସ୍ତକ ସହ ପରିଚିତ ହେବା ।

| ଗୀତିକବିତା | ଶିଶୁ ସାହିତ୍ୟ | ଅନୁବାଦ |
| --- | --- | --- |
| ଗୀତିଗୁଚ୍ଛ | ରଙ୍ଗ ବେରଙ୍ଗ | ମୃଣାଳିନୀ |
| ଗୀତି ଓ ଗଜଲ | ସାବାସ୍ ଟୁଟୁ | କୃଷ୍ଣକାନ୍ତଙ୍କ ଉଇଲ୍ |
| ଇଚ୍ଛାବତୀ ନଦୀ | ମଜା କାହାଣୀ | ଇନ୍ଦିରା ଓ ଯୁଗଳ ଅଙ୍ଗୁରୀୟ |
| ନନ୍ଦକିଶୋର ଗୀତିବିଚିତ୍ରା (ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତ) | ଟୁଟୁର ରାଇଜ ଫେରି | ସୁଇସ୍ ରବିନ୍‌ସନ |
| | ଶିଆଳ ଝିଅର ବାହାଘର | ଅରଣ୍ୟର ଆହ୍ୱାନ |
| | ଏକ-ଦୁଇ-ତିନି | |

| କବିତା | ପୁରାଣ କଥା | ନବସାକ୍ଷର ପାଇଁ |
| --- | --- | --- |
| ଆବୃତ ! ଅନାବୃତ | ଶ୍ରବଣ କୁମାର | ଡଗ-ଡମାଳିରେ ଚାଷ ବାସ କଥା |
| ପ୍ରୀତି-ପ୍ରିୟା-ପୃଥିବୀ | ପୁରାଣ ଗପ | ସୁଜାତା ସେବା ସମିତି |
| **ନାଟିକା** | ଶ୍ରୀ ରାମକୃଷ୍ଣଙ୍କ ଉପଦେଶାବଳୀ (ପ୍ରଥମ ଓ ଦ୍ୱିତୀୟ ଖଣ୍ଡ) | ଯେତେ ଦିଅଁ ସେତେ ପୂଜା |
| ଲହୁ-ଲୁହ | | ଏବଂ ଆହୁରି ଅନେକ...... |
| ମାନସୀ ଗବେଷଣାଗାର | | |